# ବିଚିତ୍ର ଚଣ୍ଡୀ

ବା

## ଦୁର୍ଗା ରହସ୍ୟ ନିଧି



ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।

ମୂଲ୍ୟ ୬୦ ।          ଚାରିଅଣା ମାତ୍ର

ରାଜା ৺ ମଧୁସୂଦନ ଦେବ ବିରଚିତ

# ବିଚିତ୍ର ଚଣ୍ଡୀ

ବା

## ଦୁର୍ଗା ରହସ୍ୟ ନିଧି



**ଶ୍ରୀ ପ୍ରାଣନାଥ ମିଶ୍ରଙ୍କ କର୍ତ୍ତୃକ**

ସଂଶୋଧିତ ଓ ପ୍ରକାଶିତ

● ପ୍ରଥମ ସଂସ୍କରଣ ●

୧୯୩୯

ମୂଲ୍ୟ ଚ ୦ । ଚାରିଅଣା ମାତ୍ର

# ସୂଚନା

ଏହି ଉତ୍କଳ ପ୍ରଦେଶରେ ବହୁଳ ଶକ୍ତିପୀଠ ଥିବା ସଙ୍ଗେ ସଙ୍ଗେ ବହୁପରିମାଣରେ ଶାକ୍ତ ଦୃଷ୍ଟିଗୋଚର ହୁଅନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଜଗଦ୍‌ପତି ଜଗନ୍ନାଥଙ୍କର ଆରାଧନା ହେଉଥିଲେହେଁ ପାର୍ଶ୍ୱଦେବୀ ବିମଳା ପୀଠରେ ଶକ୍ତି-ଅର୍ଚ୍ଚନା ବିଶେଷଭାବରେ ଅନୁଷ୍ଠିତ ହୁଏ, ଏପରି କି ପାର୍ବଣ ପର୍ବରେ ବଳିଦାନ ବିଧି ସମାହିତ ହୁଏ । ପ୍ରକୃତରେ ପ୍ରକୃତ ପୂଜା ଦ୍ୱାରା ମନୁଷ୍ୟର କ୍ରମେ ଗୋଟିଏ ଗୋଟିଏ କାମନା ପୂର୍ଣ୍ଣ ହୋଇ ଶେଷରେ ସେ ନିଷ୍କାମ ହୋଇପାରିବା ଦ୍ୱାରା ମୁକ୍ତି ଲାଭ କରେ ।

ଚଣ୍ଡୀପାଠ ଏହି ଶକ୍ତିପୂଜାର ଗୋଟିଏ ବିଶିଷ୍ଟ ଅଙ୍ଗ । ସେଥିପାଇଁ ପୂଜକବୃନ୍ଦ ତଥା ଭକ୍ତମଣ୍ଡଳୀ ମଧ୍ୟରେ 'ଚଣ୍ଡୀ' ପୁସ୍ତକର ଏତେ ଆଦର । ମାତ୍ର ଚଣ୍ଡୀ, କଠିନ ସଂସ୍କୃତ ଭାଷାରେ ରଚିତ ହୋଇଥିବାରୁ ଅଧୁନିକ ଯୁଗରେ ଜନସାଧାରଣ ତାହାର ଭାବ ଉତ୍ତମ ରୂପେ ହୃଦୟଙ୍ଗମ କରି ନ ପାରି କେବଳ ଆବୃତ୍ତି ଦ୍ୱାରା ପୂଜା କାର୍ଯ୍ୟ ସମାଧାନ କରୁଅଛନ୍ତି ।

ସଂସ୍କୃତ 'ଚଣ୍ଡୀ' ପୁସ୍ତକ ତେରଗୋଟି ଅଧ୍ୟାୟରେ ରଚିତ । ୬ ମଧୁସୂଦନଦେବଙ୍କ ବିରଚିତ ଏହି ବିଶଦ ଚଣ୍ଡୀ ତେରଗୋଟି ଛାନ୍ଦରେ ରଚନା କରାଯାଇଛି । ଛାନ୍ଦମାନଙ୍କର ରାଗରାଗିଣୀ ମନୋହର, ଭାଷା ସରଳ ଓ ଭାବ ସୁବୋଧ ହୋଇଥିବାରୁ ସେଗୁଡ଼ିକ ସର୍ବଜନାଦୃତ ହେବା ସଙ୍ଗେ ସଙ୍ଗେ ଲୋକେ ବିଚିତ୍ର ରାମାୟଣର ଛାନ୍ଦସବୁ ମଜ୍ଜି

ମଜଲିସରେ ବୋଲି ଆମୋଦ ଅନୁଭବ କଲା ପରି ଏହାର ସଦ୍‌ବ୍ୟବହାର କରିପାରିବେ ।

ଚଣ୍ଡୀପୂଜା ଓ ଚଣ୍ଡୀପାଠ ବଡ଼ ଶଙ୍କାଜନକ ବ୍ୟାପାର ବୋଲି ଜନସାଧାରଣଙ୍କର ବିଶ୍ୱାସ ଏବଂ ସେଥିପାଇଁ ବ୍ରାହ୍ମଣେତର ଜାତି ଏହା ଶୁଣିବାକୁ ଓ କେହି କେହି ବ୍ରାହ୍ମଣ ମଧ୍ୟ ଏହା ପାଠ କରିବାକୁ ଭୟ କରନ୍ତି । ମାତ୍ର ଏହି 'ଶଟାଙ୍କ ଚଣ୍ଡୀ' ପୁସ୍ତକ ପଠନ ଓ ଶ୍ରବଣରେ ସେ ଭୟର ଆଦୌ କାରଣ ନାହିଁ । କାରଣ ସଂସ୍କୃତ 'ଚଣ୍ଡୀ' ପୁସ୍ତକ କେବଳ ପୂଜାବେଳେ ବ୍ୟବହାର ଯୋଗ୍ୟ;—ମାତ୍ର ଏହା ସର୍ବଦା ଓ ସର୍ବତ୍ର ମଙ୍ଗଳ ତଥା ରସାମୋଦର ସୁଯୋଗ୍ୟ ସାମଗ୍ରୀ । ଇତି ।

ପ୍ରକାଶକ

ନମଶ୍ଚଣ୍ଡିକାୟୈଃ

# ବିଚିତ୍ର ଚଣ୍ଡୀ

## ପ୍ରଥମ ଛାନ୍ଦ

### ରାଗ—ମଙ୍ଗଳ

ଜୟ ଜୟ ଉମାସୁତ ଜୟ ବିଘ୍ନରାଜ ।
ଜୟ ସୁରନରବର-ବନ୍ଦିତ-ପାଦ-କଞ୍ଜ ହେ ॥
ଜୟ ସଦାଶିବ-ହୃଦ-ମୋଦ-ବର୍ଦ୍ଧନ ।
ଜୟ ଦେବ ସିନ୍ଦୂର-ସୁନ୍ଦର-ସୁବଦନ ହେ ॥
ଜୟ ଜବା ସିନ୍ଦୂର-ସୁନ୍ଦର-ସୁବରନ ।
ଜୟ ଭକ୍ତ କଳ୍ପ-ଦ୍ରୁମ ମୂଷିକ-ବାହନ ହେ ॥
ଅଶେଷ ମହିମା ତବ କେ କହିବ ଶେଷ ।
ଶେଷଦେବ କହୁଲେ ତ ନ ସରିବ ଲେଶ ହେ ॥
ପ୍ରତ୍ୟକ୍ଷରେ ମୋହଠାରେ ହେଉ କୃପା-ଦୃଷ୍ଟି ।
ବିଘ୍ନ-ଅନଳ ଲିଭାଅ ବର୍ଷି କୃପା-ବୃଷ୍ଟି ହେ ॥
ଏଥୁ ଅନ୍ତେ ସାଧୁଜନେ ଶୁଣ ଏକ ଚିତ୍ତେ ।
ବଦରିକାଶ୍ରମେ ହେଲା କଥା ଯେତେ ଯେତେ ହେ ॥
ମାରକଣ୍ଡ ଋଷି ବସିଥିଲେ ସମାଧିରେ ।
ମୁନିମଣ୍ଡଳ ସେଠାରେ ମିଳିଲେ ସଧୀରେ ସେ ॥
ଗଉତମ ବିଶ୍ୱାମିତ୍ର ଜାବାଲି ବଶିଷ୍ଠ ।
ବାମଦେବ ଅତ୍ରି ଆଦି ସର୍ବ ମୁନିଶ୍ରେଷ୍ଠ ସେ ॥

ତାଙ୍କୁ ଦେଖି ପରମ ଆନନ୍ଦ ମହାଋଷି ।
ଗନ୍ଧ ପୁଷ୍ପ ଫଳ ମୂଳ ଦେଇ କଲେ ତୋଷୀ ଯେ ॥
ଯଥାବିଧି କରି ଋଷି ବସାଇ ପାଖରେ ।
କୋମଳ କରି କହନ୍ତି ବଚନ ସଧୀରେ ହେ ॥
କି ନିମନ୍ତେ ଏକାବେଳେ ମିଳିଲ ହେ କହ ।
ଏହା ଦେଖି ମନେ ମୋର ହେଉଛି ସନ୍ଦେହ ହେ ॥
ଏହା ଶୁଣି ସର୍ବ ମୁନି ଯୋଡ଼ି ବେନି କର ।
କହନ୍ତି ହେ ତପୋଧନ ବାରେ ଦୟା କର ହେ ॥
ପୂର୍ବେ ତୁମ୍ଭ ମୁଖୁଁ ସର୍ବ ଧର୍ମ ଅଛୁଁ ଶୁଣି ।
ଭଗବତୀ ଦୁର୍ଗାଙ୍କ ଚରିତ କହ ପୁଣି ହେ ॥
କେଉଁଠାରୁ ଉତପତ୍ତି କି କର୍ମ ତାଙ୍କର ।
କି କି କାର୍ଯ୍ୟ କରିଛନ୍ତି କି ଫଳ ପୂଜାର ହେ ॥
ସେବା କରି ତାଙ୍କୁ କେ କି ବର ଅଛି ପାଇ ।
ବିସ୍ତାରଣ କହ ସର୍ବଜ୍ଞତା ହେ ଗୋସାଇଁ ଯେ ॥
ଏତେ କହୁ ଚଣ୍ଡିକା ଚରଣେ ଦେଇ ମନ ।
ଆରମ୍ଭିଲେ ଚଣ୍ଡୀପାଠ ମୃକଣ୍ଡୁନନ୍ଦନ ଯେ ॥
ଶ୍ରୀମଧୁସୂଦନ ଦେବ ନୃପତି ବୋଲନ୍ତି ।
ଏ ଘୋର ସଙ୍କଟୁ ମୋତେ ରଖନ୍ତୁ ପାର୍ବତୀ ହେ ॥

---

## ଦ୍ୱିତୀୟ ଛାନ୍ଦ

### ରାଗ—କେଦାରକାମୋଦୀ

ମାରକଣ୍ଡ କହନ୍ତି ଋଷି ସଭାରେ ।
ଶୁଣ ହେ ମୁନିମାନେ ଏକ ମନରେ ହେ ॥
ସାବର୍ଣ୍ଣି ମନୁ ଉତପତ୍ତି ଶୁଦ୍ଧିକ ।
ସୂର୍ଯ୍ୟକୁଳେ ଜନ୍ମିଲେ ଗନ୍ଧ ସିଦ୍ଧିକ ହେ ॥

ସେ ପୁଣି ମହାମାୟା ଅନୁରାଗରେ ।
ମୁନି ମଧ୍ୟରେ ଶ୍ରେଷ୍ଠ ହେଲେ ବଧିରେ ହେ ॥
କି କହିବା ତାଙ୍କର ଗୁଣ ସ୍ୱଭାବ ।
କହୁ ବସିଲେ ଶେଷ ହେବ ନା କାବବ ହେ ॥
ସ୍ୱାରୋଚିଷମନ୍ୱନ୍ତରେ ଚୈତ୍ର ବଂଶରେ ।
ସୁରଥ ନାମେ ରାଜା ହେଲେ ମହୀରେ ଯେ ॥
ସର୍ବ ଲକ୍ଷଣେ ପୂର୍ଣ୍ଣ ରାଜନୀତିରେ ।
ଦାନେ ମାନେ ସମାନ ନାହିଁ କ୍ଷିତିରେ ହେ ॥
ପାଳିଲେ ପୁତ୍ରଠାରୁ ଅଧିକେ ପ୍ରଜା ।
ଦେବ ବ୍ରାହ୍ମଣ ପାଦେ କରନ୍ତି ପୂଜା ହେ ॥
ଶସ୍ୟପୂର୍ଣ୍ଣ ହୋଇଲା ମହୀମଣ୍ଡଳ ।
ଦେଶୁଦେଶ ବଢ଼ିଲା ପ୍ରତାପାନଳ ଯେ ॥
କିଛୁଦିନେ ବିଦ୍ରୋହୀ ରାଜମଣ୍ଡଳୀ ।
ସହି ନ ପାରି ତାଙ୍କୁ ବଳେ ଯେ ମେଳି ହେ ॥
ତାଙ୍କ ସଙ୍ଗତେ ହେଲା ପରମରଣ ।
କହିବାକୁ ବଚନ ଅଟେ ଦାରୁଣ ହେ ॥
ବିଧି ବାମ ହେବାରୁ ସେ ଦଣ୍ଡଧାରୀ ।
ବିମୁଖ ହେଲେ ତହିଁ ରଣରେ ହାରି ଯେ ॥
ସକଳ ବଳ, ରାଜ୍ୟ, ଧନ ହରାଇ ।
ଏକାକୀ ହୋଇ ବନେ ପଶିଲେ ଯାଇ ଯେ ॥
ଇତସ୍ତତଃ ହୋଇଣ ବୁଲନ୍ତି ବନ ।
ଦେଖିଲେ ତହିଁ ଏକ ଋଷି ଆଶ୍ରମ ହେ ॥
ବେଦ ଧ୍ୱନିରେ ପୂରିଅଛି ସେ ସ୍ଥାନ ।
ହେଉଛି ତହିଁ ଦୁର୍ଗା ଗୁଣ କୀର୍ତ୍ତନ ହେ ॥
ଋଷିଙ୍କୁ ଦେଖି ରାଜା ପାଦେ ପଡ଼ିଲେ ।
ଆପଣା ଅନୁଭବ ଦୁଃଖ କହିଲେ ଯେ ॥

ମୁନି ତାହାଙ୍କୁ ବହୁ ସମ୍ଭାବନାରେ ।
ପାଶେ ରଖିଲେ ତୋଷି ଫଳମୂଳରେ ଯେ ॥
ଏମନ୍ତେ ରହୁ କିଛି ଦିନ ଅନ୍ତରେ ।
ଦେଖିଲେ ଏକ ବୈଶ୍ୟ ତଥି ବିଚରେ ଯେ ॥
ତା ତୁଳେକ ହେଲା ଭେଟ ବିଧି-ବଶରେ ।
କହିଲା ଦୁଃଖ ତାର ରାଜା ଆଗରେ ଯେ ॥
ଏମନ୍ତ ଦୁହେଁ କାଳ କାଟିଲେ ବସି ।
ପୁଣି ମିଳିଲେ ଋଷି ଆଶ୍ରମେ ଆସି ଯେ ॥
କର-ପଲ୍ଲବ ଯୋଡ଼ି ବସି ନୃପତି ।
ମୁନି ଆଗେ କହନ୍ତି ବହୁ ବିନତି ଯେ ॥
ହେ ମୁନି, କହ ଏବେ କି ବୁଦ୍ଧି କରି ।
କେମନ୍ତେ ହୋଇ ଦୁଃଖ-ଜଳଧି ତରି ଯେ ॥
କହ କହ ଉପାୟ ସୁମୁଖ ହୋଇ ।
ଘୋର ବିପତ୍ତି ପାର କେମନ୍ତେ ଯାଇ ଯେ ॥
ବେନିଏ ଭବେ ଯାକୁ କଲି ନିଜର ।
ତେଜିଲେ ବହୁ ଦ୍ୱେଷ ଭାବ ସେ ପର ଯେ ॥
ଏଥିର ହେତୁ କିଛି ବୁଝି ନ ପାରି ।
ତବ ଚରଣେ ପଡ଼ି କରୁ ଗୁହାରି ଯେ ॥
କାରଣ କହ ଆମ୍ଭ ସଂଶୟ ଟଳାଇ ।
କି ପାପ ହେତୁ ବିଧି ଏ ଦୁଃଖ ଦେଇ ଯେ ॥
ତା ଶୁଣି ହସି ମୁନି ବୋଲନ୍ତି ଗିର ।
ଏଥିପାଇଁ କି ଚିନ୍ତା ନ କର ବୀର ଯେ ॥
ମହାମାୟା ଅବୋଧଛନ୍ତି ସଂସାରେ ।
ତାଙ୍କ ପ୍ରଭାବେ ଏହା ଭୁଞ୍ଜନ୍ତି ନରେ ଯେ ॥
ସେହୁ ହେତୁ ନ ରଖି ତହୁଁ ବିସ୍ମୟ ।
ମହାମାୟା ଚରଣେ ରଖ ହେ ଲୟ ଯେ ॥

ଅନ୍ତରେ ଘୁଞ୍ଚିଯିବ ସବ ଶପତ୍ର ।
ପ୍ରାଣ ଅନ୍ତେ ଭୁଞ୍ଜିବ ସ୍ୱର୍ଗ ସମ୍ପତ୍ତି ଯେ ।
ନୃପ ବୋଲନ୍ତି କହ ତାଙ୍କ ଚରିତ୍ର ।
କି କର୍ମ ତାଙ୍କର କି ଗୁଣ କି କୀର୍ତ୍ତି ଯେ ।
ଶୁଣି କୃତାର୍ଥ ପିଣ୍ଡ ହେଉ ଆମ୍ଭର ।
ଏହା ଶୁଣି ବୋଲନ୍ତି ମୁନି ଉତ୍ତର ଯେ ।
କାଳାନ୍ତେ ଏକାର୍ଣ୍ଣବ ହେଲା ଜଗତ ।
ସ୍ଥାବର ଜଙ୍ଗମାଦି ହେଲେ ଗୁପତ ଯେ ।
ନଷ୍ଟ ହୋଇଲା ଚରାଚର ସମସ୍ତ ।
ଚତୁର୍ଦ୍ଦଶ ଭୁବନ ହୋଇଲା ଧ୍ୱସ୍ତ ଯେ ।
ଯୋଗମାୟାରେ ନିଦ୍ରା ଗଲେ ଶ୍ରୀହରି ।
ସେ କାଳେ ବଟପୁଟ ଆଶ୍ରୟ କରି ଯେ ।
କମଳ-ଭବ ନାଭି-କମଳେ ଥିଲେ ।
ସେଠାରେ ଚମତ୍କାର ତୋଳେ ଦେଖିଲେ ଯେ ।
ବିଷ୍ଣୁ କର୍ଣ୍ଣ ମଳରୁ ହୋଇ ସମ୍ଭୂତ ।
ମଧୁକୈଟଭ ନାମେ ବେନି ଦଇତ ଯେ ।
ମହା ବଳେ ବିକ୍ରମୀ ହୋଇ ସେ କାଳେ ।
ବ୍ରହ୍ମାଙ୍କୁ ଭକ୍ଷିବାକୁ ଧାଇଁଲେ ବଳେ ଯେ ।
ଦେଖିଲେ ପ୍ରଜାପତି ନାହିଁ ଶରଣ ।
ନିଦ୍ରାରେ ଅଚେଷ୍ଟିତ ରମାରମଣ ଯେ ।
ଆର୍ତ୍ତସ୍ୱରେ ଡାକିଲେ ରଣ ଭବାନୀ ।
ତୁମ୍ଭେ ଅଟ ସକଳ ଲୋକ ଜନନୀ ଯେ ॥
ଆଦ୍ୟା ପ୍ରକୃତି ତୁମ୍ଭେ ସର୍ବମଙ୍ଗଳା ।
ଭବର ଧର କୂଳେ ଲଗାଇ ଭେଳା ଯେ ।
ତୁମ୍ଭେ ତ ସିଦ୍ଧି ବୁଦ୍ଧି ସର୍ବ ଈଶ୍ୱରୀ ।
ତୁମ୍ଭ ତେଜ ରହିଛି ବ୍ରହ୍ମାଣ୍ଡେ ପୂରି ଯେ ।

ତୁମ୍ଭେ ତ ସରସ୍ୱତୀ କମଳାଳୟା ।
ନିଷ୍ଟସ୍ତ ନାଶ ଗଲ ନ କଲେ ଦୟା ଯେ ॥
କେଶବ ନୟନରୁଁ ହୁଅ ବାହାର ।
ଶନର୍ତ୍ତେ ଘେନି ଦୁଷ୍ଟ ଦୈତ୍ୟ ନିବାର ଯେ ॥
ବ୍ରହ୍ମା ଜଣାଣ ଶୁଣି କଲେ କରୁଣା ।
ବିଷ୍ଣୁ ଦେହ ଛାଡ଼ିଲେ ସେ ସୁଲକ୍ଷଣା ଯେ ॥
ଉଠି ବସିଲେ ପ୍ରଭୁ ସେ ସମୟରେ ।
ଦେଖିଲେ ମହାବଳୀ ଦୁଇ ଅସୁରେ ଯେ ॥
ପାଞ୍ଚ ସହସ୍ର ବର୍ଷ ତାଙ୍କ ସଙ୍ଗରେ ।
ମାଲ ଯୁଦ୍ଧ ଆରମ୍ଭ କଲେ ସତ୍ୱରେ ଯେ ॥
ଯୁଦ୍ଧରେ ହାର ଦୈତ୍ୟ ବୋଲନ୍ତି ବାଣୀ ।
କି ବର ମାଗ ଦେବୁ ହେ ଚକ୍ରପାଣି ଯେ ॥
ସନ୍ତୋଷ ହେଲୁ ତୁମ୍ଭ ରଣକୁ ଦେଖି ।
ବର ମାଗିଣ ହୁଅ ପରମ ସୁଖୀ ଯେ ॥
କେଶବ ବୋଲନ୍ତି ମୋ ମାଗୁଣି ଏତେ ।
କେବଳ ନାଶ ଯିବ ଦୁହେଁ ମୋ ହାତେ ଯେ ॥
ମହାମାୟା ମୋହିତ ହୋଇ ଅସୁର ।
ବୋଲନ୍ତି ଯେଉଁ ସ୍ଥାନେ ନ ଥିବ ନୀର ସେ ॥
ସେହି ଠାବରେ ହର ପ୍ରାଣ ଆମ୍ଭର ।
ଅସ୍ତୁ ବୋଲି ବୋଇଲେ କମଳାବର ଯେ ॥
ଜଙ୍ଘ ଉପରେ ଥୋଇ ପ୍ରାଣ ହରିଲେ ।
ପ୍ରଳୟ ଜଳ ମଧ୍ୟେ ପକାଇ ଦେଲେ ଯେ ॥
ମଧୁସୂଦନ ପଦ ବାନ୍ଧିଲେ ହରି ।
ମଧୁସୂଦନ ଦେବ ବୋଲେ ବିଶ୍ୱର ଯେ ॥

---

## ତୃତୀୟ ଛାନ୍ଦ

### ରାଗ—ଆଷାଢ଼ଶୁକ୍ଳବାଣୀ

ଶୁଣ ହେ ସୁରଥ ନୃପଶେଖର
ପୂର୍ବରେ ଯେ ଥିଲା ମହିଷାସୁର,
ପ୍ରତାପ ତପନ ଜଦେ ତାହାର
ଶୁଷ୍କ ହୋଇଗଲେ ଧନ୍ତ ସାଗର
ଚତୁର୍ଦ୍ଦଶ ପୁର,
ନାମରେ ଯାହାର ହେଲା କାତର । ୧ ।
ଡରେ ପଳାଇଗଲେ ଶଚୀପତି
ସୁଖେ ଭୋଗ କଲା ଇନ୍ଦ୍ର ସମ୍ପତ୍ତି,
କର ଯୋଡ଼ିଣ ଦଶଦିଗପତି
ସେବିଲେ ତାକୁ ରଖି ଦିବା ରାତି ।
ନାହିଁ ତାର ଭୀତି
ହୁତାଶନ ସମ ଜଳଇ ଜ୍ୟୋତି । ୨ ।
ଅଧିକାରମାନ ନେଲା ଛଡ଼ାଇ
ଦେବବୃନ୍ଦଙ୍କୁ ଦେଲା ଘଉଡ଼ାଇ,
ବ୍ରହ୍ମା ସ୍ଥାନେ ସର୍ବେ ମିଳିଲେ ଯାଇ
ଯେ ଯାହା ଦୁଃଖ ତାଙ୍କ ଆଗେ କହି ।
ଅହେ ପରମେଷ୍ଠୀ,
କି କରିବୁ କହ ସରିଲା ସୃଷ୍ଟି । ୩ ।
ବହୁ ଆଶ୍ୱାସି ତାଙ୍କୁ ବେଦାକର
ସଙ୍ଗତେ ଘେନି ହେଲେ ଅଗ୍ରସର,
ଗରୁଡ଼ଧ୍ୱଜ ଯେଉଁଠାରେ ଥିଲେ
ସେଠାରେ ଯାଇ ପ୍ରବେଶ ହୋଇଲେ ।
ଦେବ ସୁରମଣ୍ଡଳୀ,
ପାଦେ ପଡ଼ି ଶିରେ ଯୋଡ଼ି ଅଞ୍ଜଳି । ୪ ।

ମହିଷ ବୋଲି ସେ ଏକ ଅସୁର,
ତେଜରେ ମନ୍ତୁ ଅଟ୍ଟ ତିନିପୁର ।
ଦେବ ବ୍ରାହ୍ମଣ କଣ୍ଟକ ନିଷ୍ଠୁର,
ନାମେ ବ୍ରହ୍ମାଣ୍ଡ କମ୍ପଇ ଯାହାର ।
ଶୁଣି ତା ଖ୍ୟାତିକି,
ବଳେ ଯୁଞ୍ଜଇ ହୋମ ଅଦ୍ଭୁତକି । ୫ ।
ଶୁଣି କେଶବ ଅଧ ଦେବତାଏ
କ୍ରୋଧ ଉଷ୍ମମାନ କରିଲେ କାୟେ,
ତେଜେ ତ୍ରିଦଶ ଅଙ୍ଗରୁ ବାହାର,
ହୋଇ କଳ୍ପିଲ୍ଲ ପର୍ବତ ଆକାର ।
ପୁଣି ଗୁହ୍ମୁଁ ଗୁହ୍ମୁଁ,
ନାରୀ ଏକ ଜନ୍ମ ହୋଇଲା ତହୁଁ । ୬ ।
ଶିବ ତେଜେ ମୁଖ ହୋଇଲା ଜାତ,
ଯମ ଅଂଶରେ ଚିକୁର ସମ୍ଭୂତ ।
ହୁତାଶନ ତେଜେ ନେତ୍ର ଉଦିତ,
ବସ୍ତୁଙ୍କ ତେଜୁଁ ବାହୁ ହେଲା ଜାତ ।
ସୋମ ଅଂଶ ତେଜେ,
ହୃଦେ ରହିଲେ ପୀନସ୍ତନ ବେନି । ୭ ।
ଇନ୍ଦ୍ର ତେଜେ କଟୀ ହୋଇଲା କ୍ଷୀଣ,
ବରୁଣ ତେଜେ ଜଙ୍ଘ ଉରୁପନ୍ନ ।
ଭୂମି ଭାରବଶୁଁ ନିତମ୍ବ ଭାର,
ବ୍ରହ୍ମା ତେଜୁଁ ଜାତ ବେନି ପଦ୍ମର ।
ରବି ତେଜ ମିଳି,
ଜନମ ହୋଇଲେ ସର୍ବ ଅଙ୍ଗୁଳି । ୮ ।
ବସୁଭାଗେ କରାଙ୍ଗୁଳି ପ୍ରକାଶ,
କୁବେର ତେଜେ ନାସିକା ଉଲ୍ଲାସ ।

ଦନ୍ତପନ୍ତି ପ୍ରଜାପତି ଅଂଶରେ,
ଭ୍ରୂ କାନ୍ତ ବେନି ସନ୍ଧ୍ୟା ତେଜରେ ।
ଶ୍ରବଣ ଯୁଗଳ,
ଅନିଳ ତେଜୁଁ ହୋଇଲା ମଞ୍ଜୁଳ । ୯ ।
ଏମନ୍ତେ ଦେବୀ ହୋଇଲେ ସମ୍ଭୂତ,
ଦେଖି ତ୍ରିଦଶଗଣ ବିମୋହିତ ।
ସ୍ୱ ଚକ୍ର ଭରନ୍ତୁ ବାହାର କରି,
ଭକ୍ତିରେ ନେଇ ସମର୍ପିଲେ ହରି ।
ଦେଖି ଶୂଳଧର,
ଶୂଳ ନେଇ ଦେଲେ ତାଙ୍କ ଶ୍ରୀକର । ୧୦ ।
ବ୍ରହ୍ମା ତାହାଙ୍କୁ ଦେଖି ହେଲେ ଭୋଳା,
ଲଲାଟ ପଟ୍ଟରେ ଖୋଷିଲେ ତୋଳା ।
କରିବାପାଇଁ ନାନାରଙ୍ଗେ ଲୀଳା,
ଦେଲେ କମଣ୍ଡଳୁ ରୁଦ୍ରାକ୍ଷମାଳା ।
ହସ୍ତେ ହେଲେ ଲାଗି,
ଦେଖିଲେ ମୋହିତ ହୋଇବେ ଯୋଗୀ ।୧୧।
ଅରୁଣ ଚରଣ ତଳେ ତାଙ୍କର,
ବରୁଣ ସମର୍ପଣ କଲେ ଦର ।
ପରମ ସୁନ୍ଦର ଦିଶିଲା କର,
ଉପମା ଦେବାକୁ ନାହିଁ ତ୍ରିପୁର ।
ଟେପିଚା ଶକ୍ତିକି,
ହୁତାଶନ ଦେଲେ ନିଜ ଶକ୍ତିକି । ୧୨ ।
ବାଣରେ ସମ୍ପୂର୍ଣ୍ଣ କଲେ ତୂଣୀର,
ଶରାସନ ସମର୍ପିଲେ ସମୀର ।
ବଜ୍ରଧର ବଡ଼ ସନ୍ତୋଷ ହୋଇ,
ଐରାବତଠାରୁ ଘଣ୍ଟାକୁ ଦେଇ ।

ଚରଣେ ପଡ଼ିଲେ
ଭକ୍ତିଭାବରେ ଭୂମିରେ ଗଡ଼ିଲେ । ୧୩ ।
ଶମନ ସୁମନ ହୋଇ ଦଣ୍ଡକୁ,
ଦେଇ ସେ ମୃହିଁ ରଖିଲେ ଅଙ୍କକୁ ।
ଅମୃତ ପାତ୍ର ସମର୍ପିଲେ ପାଶକୁ,
ଦେଲେ ସାଦରେ ଅମର ବାସକୁ ।
ନିର୍ମଳ ହାରକୁ,
ଗଳାରେ ଦେଇ ତେଜିଲେ ଦରକୁ ।୧୪।
ଯତନ କରି ବିଶ୍ୱକର୍ମା ତହିଁ,
ରତନ କିରୀଟ କୁଣ୍ଡଳ ଦୁଇ ।
ହାର କେୟୂର ବଳଧ ଭୂଷଣ,
ସର୍ବାଙ୍ଗରେ ମଣ୍ଡି ଦେଲେ ଆପଣ ।
ସର୍ପସ୍ରଜ ତାଙ୍କୁ,
ଦେଲେ ନାଗଯଜ୍ଞ ଉପବୀତକୁ । ୧୫ ।
ସନ୍ତୋଷ ହୋଇ ଦିବାକର ତାଙ୍କୁ,
ସମର୍ପଣ କଲେ ନିଜ ତେଜକୁ ।
କାଳ ଅସି କରବାଳ ଭେଟିଲେ,
ଧନପତି ପାନପାତ୍ରକୁ ଦେଲେ ।
ଅସି ହେମଗିରି,
ବାହନ ନିମନ୍ତେ ଦେଲେ କେଶରୀ । ୧୬ ।
ସର୍ବ ଦେବତାଏ ଶିବପ୍ରିୟାଙ୍କୁ,
ତୋଷିଲେ ଦେଇ ଆୟୁଧମାନଙ୍କୁ ।
ମହାଦୁର୍ଗତିରୁ ତରିବା ପାଇଁ,
ଦୁର୍ଗା ନାମ ଦେଲେ ସନ୍ତୋଷ ହୋଇ ।
ଜୟସ୍ତୁ ଶବଦ
ଜଗତ ପୂରି କରିଲା ସ୍ତବଧ । ୬ ।

ଅଛୁହାପେ ଶିବ ପଞ୍ଚମହୁଷୀ,
ଦୁଷ୍ଟ ଦଇତଙ୍କ କଷ୍ଟ ପ୍ରକାଶି ।
ଭ୍ରଷ୍ଟ ଅଧିକାର ସୁରଙ୍କୁ ଦେଖି,
କଷ୍ଟ କି କହ ବୋଇଲେ ସୁମୁଖୀ ।
ଶିରେ ଯୋଡ଼ି କର,
ନିବେଦନ କଲେ ଦେବୀ ଛାମୁର । ୮ ।
ମହ୍ନଷା ଦଇତ ଦେଲାକ ପୀଡ଼ା,
ଦେଲକୁ ଦେଲ ହେଲୁ ଘରବୁଡ଼ା ।
ସେବଲ୍ଲ ଜଗ୍ତାରୁ ସ୍ୱର୍ଗ ଦାଦାସ
ଦୁର୍ବିଲ୍ଲ ନାହିଁ ତା ହୃଦୟୁ କ୍ଲେଶ ।
ଅଗୋ ଭଗବତ !
ବିନାଶି ତାକୁ ଉଦ୍ଧାର କାରତ । ୧୯ ।
ଶୁଣି ସନ୍ତୋଷ ହେଲେ ଠାକୁରାଣୀ,
ଦେବତାମାନଙ୍କୁ କହ୍ୱଲେ ବାଣୀ ।
କୋହ୍ନବ ତୁମ୍ଭେମାନେ ତାର ବଶ,
ଅଳପ ଦନେ ସେ ହୋଇବ ନାଶ ।
ଏବେ ଫୁଅ ତୋଷୀ,
ନିକଟେ ହେବ ସର୍ବେ ସ୍ୱର୍ଗବାସୀ ।୨୦।
ଏତେ କହ୍ନ ଦେବୀ ହେଲେ ଅନ୍ତର ।
ସର୍ବ ଦେବ ଗଲେ ଯେ ଯାହା ପୁର ।
ଏମନ୍ତେ ଗଲୁ କେତେକ ଦାଦସ,
ଯଥା ମହ୍ନଷ ହୋଇଲୁ ବନାଶ ।
ତା ଅଗେ କହ୍ୱାବା,
କଲ୍ଲ ତଳପ ଭସ୍ମ ଉପେକ୍ଷିବା । ୨୧ ।
ଶ୍ରୀ ମଧୁସୂଦନ ଦେବ ନୃପତ,
ଦୁର୍ଗା ଚରଣେ ଦେଇ ଶୁଦ୍ଧ ଚିତ୍ତ ।

ଯେ ଦୁର୍ଗା ରହସ୍ୟ କଥା କହନ୍ତି,
ଶୁଣିଲେ ଖଣ୍ଡଇ ସିବ ଭବ ଭୀତ ।
ଅହେ ସାଧୁସନ୍ତେ,
ଏ ଗୀତ ଦୋଷ ନ ଧରିବ ଚିତ୍ତେ । ୨୨ ।

---

## ଚତୁର୍ଥ ଛାନ୍ଦ

### ରାଗ—ସିନ୍ଧୁଡ଼ା

ଅହେ ଦଣ୍ଡଧାରି ! ଶୁଣ କହୁଁ ଏତେ ବିଚିତ୍ର ଦୁର୍ଗା ଚରିତ ।
କୋଳାହଳ ଧ୍ୱନି ସେ କାଳରେ ଶୁଣି କ୍ରୁଦ୍ଧ ହୋଇଲା ଦଇତ ସେ ।
ସେ ଯେ ମହିଷାସୁର ।
ସେନାମାନଙ୍କୁ ଘେନି ସଙ୍ଗର ସେ ।
ଯୁଦ୍ଧ ନିବନ୍ଧେ ହେଲା ବାହାର ସେ । ୧ ।
କୋଟି କୋଟି ରଥିମାନଙ୍କ ସାରଥି ତାହାଙ୍କୁ କରାଇ ସଜ ।
କନକ ରଥମାନଙ୍କେ ବାଜିରାଜି ଖଞ୍ଜାଇ ସେ କଲେ ସଜ ସେ ।
ନାନା ପତାକାବଳି ।
ରଥେ ଜଡ଼ିତ ଦିଶନ୍ତି ଝଳି ସେ ।
ଦେବୀ ସଙ୍ଗତରେ ହେବ କଳି ସେ ।୨।
କୋଟି କୋଟି ଗଜ ହୋଇ ଦିବ୍ୟ ସଜ ଧଇଛନ୍ତି ଗିରିକାନ୍ତି ।
ତୁରଙ୍ଗ ତରଙ୍ଗ ପରାୟେ ତୁରଙ୍ଗମାନେ ରଙ୍ଗରେ ଧାଉଁନ୍ତି ସେ ।
ମାଲମାନେ ସୁବେଶ ।
ହୋଇ ଶଉରେ ଧରି ଉଲ୍ଲାସ ସେ ।
ବାହାରିଲେ କରି ଅଟ୍ଟହାସ ସେ । ୩ ।
ବିବିଧ ଅୟୁଧମାନ ଧରି ଯୁଦ୍ଧ କରିବାକୁ ସଜ ହେଲେ ।
ରୂଷଣ ଚତୁରସ ନାନାରଙ୍ଗେ ତୂରୀ ଭେରୀମାନ ବଜାଇଲେ ସେ ।

ଭଲ୍ଲ ଭଲ୍ଲ ସେ ଢାଲ ।
ଉଚ୍ଛୁଳଇ ମୃଦଙ୍ଗ କାହାଳ ସେ ।
ଯଥା ସାଗର ତରଙ୍ଗମାଳ ସେ । ୪ ।

ଚତୁରଙ୍ଗବଳ ଘେନି ମହାବଳ ବେଗେ କଲା ଅନୁକୂଳ ।
ସୈନ୍ୟମାନଙ୍କର ପାଦଘାତେ ଘୋର ମହୀ ହେଲା ଟଳମଳ ସେ ।
ଢାହୁଁ ନାହୁଁ ସେ ଛବ ।
ଧୂଳି ଛୁଞ୍ଚିଲା ରବି ପଦବୀ ସେ ।
ତେତେ ବର୍ଣ୍ଣିବି ବସି ସେ ଛବ ସେ । ୫ ।

ସାଜମାନ ସଜ କରି ଦୈତ୍ୟସୈନ୍ୟ ବାଜଯନ୍ତ୍ର କଲେ ସଧୀରେ ।
ଭୁବନଜନନୀ ହିମାଦ୍ରିନନ୍ଦନୀ ଯୁଦ୍ଧରେ ହେଲା ସମ୍ମୁଖରେ ସେ ।
ଦେଖି ହେଲା କୃତାର୍ଥ ।
ତାର ଦେହ ବଢ଼ିବାର ସାର୍ଥ ସେ ।
ବେଳୁଁ ବେଳ ହୋଇଲା ଅନର୍ଥ ସେ । ୬ ।

ଦେଖି ଦୈତ୍ୟବଳ ଗିରିଜା ପ୍ରବଳ ହୋଇ କାୟା ବଢ଼ାଇଲେ ।
ଗଗନମଣ୍ଡଳ କିରୀଟ କୁଣ୍ଡଳ ଉହାଡ଼ରେ ଘୋଡ଼ାଇଲେ ସେ ।
ସଦାଶିବ ରମଣୀ ।
ଧନମଣି କରି ଚୂଡ଼ାମଣି ସେ ।
ପାଦଘାତେ କମ୍ପାଇ ଧରଣୀ ସେ । ୭ ।

ଧରଣି ସହସ୍ର ଭୁଜେ ଅସ୍ତ୍ର ଶସ୍ତ୍ର ଛୁଞ୍ଚିଦେଲେ ଦଣଦଣ ।
ଟହ ଟହ ହାସ କରଣି ପ୍ରକାଶ ଦେବଙ୍କୁ କଲେ ଉଲ୍ଲାସ ସେ ।
ଦେଖି ମହିଷାସୁର ।
କ୍ରୋଧଭରେ ହେଲା ଜର ଜର ସେ ।
ଶକ୍ତି ଚୂଲଇ କଲା ପ୍ରହାର ସେ । ୮ ।

ତ୍ରିଶୀସ୍ତୁ କଟାକ୍ଷପାତେ ଶତ୍ରୁପକ୍ଷ ସୁନ୍ଦରୀ ତା ନାଶ କରି ।
ପ୍ରଳୟ ପବନ ପର୍ବତେ ବହନ ଶ୍ୱାସ ଛାଡ଼ିଲେ ଗର୍ଜ୍ଜି ସେ ।

କୋଟି କୋଟି ସଇନ୍ୟ ।
ତହୁଁ ଜାତ ହେଲେ ଦେଖ ଘେନ ସେ ।
ପୂରିଗଲେ ଆକାଶ ଅବନୀ ସେ । ୯ ।

କି ଦେବ ତୁଳନା ଯହିଁ ଅକଳନା ଲକ୍ଷ ଲକ୍ଷ ସେନାପତି ।
ବିପକ୍ଷମାନଙ୍କୁ ବେଗେ ଭକ୍ଷିବାକୁ ସମସ୍ତେ ଚଞ୍ଚଳ ମତି ସେ ।
ଗଜମାନେ ଅସନ୍ତି ।
ଐରାବତ ଶୋଭାକୁ ନିନ୍ଦନ୍ତି ସେ ।
ରଣ ଧ୍ୱଜ ଅଙ୍କୁଳେ ଧରନ୍ତି ସେ । ୧୦ ।

ଫରିକାରମାନେ ଫରି ଧରି କରେ ଓଗାଳିଲେ ଆଗ ହୋଇ ।
ଶୂନ୍ୟେ କୁଦାମାରି କରେ ଗଦାଧରି ଘେରିଲେ ଦୈତ୍ୟଙ୍କୁ ତହିଁ ସେ
ଭେରି ନାଦ ପ୍ରମାଦ ।
ମାର ମାର ଡାକରେ ବିଷାଦ ସେ ।
ପୂରିଗଲା ଜଗତେ ଶବଦ ସେ । ୧୧ ।

ତୋମର ମୁଷଳ ଭିନ୍ଦିପାଳ ଶୂଳ ଆୟୁଧମାନଙ୍କୁ ଧରି ।
ହସି ହସି ହୋଇ ଦଣି ଦଣି ଧାଇଁ ମିଶି ମିଶି ଗଲେ ତହିଁ ସେ ।
ସୁର ଅସୁର ଗୋଳ ।
ମନ୍ଥା ହେଲା ପ୍ରାୟେ ସିନ୍ଧୁ ଜଳ ସେ ।
ନ ଦିଶିଲା କାହିଁ ଥଳ କୂଳ ସେ । ୧୨ ।

ମେଘ ଘଡ଼ଘଡ଼ି ପ୍ରାୟେ ଝୁଡ଼ି ବଡ଼ି ଏକୁଁ ଆରେକେ ଧାମନ୍ତି ।
ଶ୍ରାବଣ ବରଷା ପ୍ରାୟେ ତହିଁ ବସାଉଲେ ବାଣ ବରଷନ୍ତି ସେ ।
କାହା ଗଲା କେ ଧରି ।
ଅନ୍ୟେ ପ୍ରହାର କରନ୍ତି କ୍ରୁଦ୍ଧ ସେ ।
ଫେରି ସେ ତାକୁ ମାରି କଚାରି ସେ । ୧୩ ।

କାହାର ବରଷ୍ଟ କେ ଦେଖି ତରନ୍ତି ଅବଶିତ ପ୍ରାୟେ ହୋଇ ।
କରି ପରିହାଣି ତୁମ୍ଭର ଏ ପ୍ରାଣି ନିଅ ବୋଲି ନେଉଛାଇ ସେ ।

କେତେ ବୀର ମିଶନ୍ତି ।
ରଥ ଧରି ରଥେ ବର୍ତ୍ତନ୍ତି ସେ ।
ଯୋଦ୍ଧେ ପ୍ରଶଂସା ଦେଖି କରନ୍ତି ସେ । ୧୪ ।

ଦନ୍ତପନ୍ତି ଉଡ଼ି କେ ହସ୍ତୀଏ ଦାଢ଼ି ବଢ଼େ ତାହାକୁ ଓଟାଳି ।
ଉଦ୍ଧ ଉଦ୍ଧ ଖାଇ ଅଳି ଯାଉ ତାହାଁ ଦର୍ପ କାଳ-ସର୍ପ ଗୁଳି ସେ ।
ଏତେ ବୋଲି ସେ ବୀର ।
ବଜ୍ର ସମାନେ ଧରି ମୁଦ୍‌ଗର ସେ ।
ପ୍ରାଣ ନେଲା ଛାଉ ପିଟି ଶିର ସେ । ୫ ।

କେତେ ବଳବନ୍ତ ଧାଇଁ ଦନ୍ତିଦନ୍ତ ଦନ୍ତୀ ଉପରେ ପିଟିଲେ ।
ଯୋଦ୍ଧେ ବଳବନ୍ତ ହୋଇ ରୂପେ ମତ୍ତ ଗଜ ମୁକ୍ତା ଲୁଟିଲେ ସେ
ଗିରି ପରସ୍ପରେ ହୋଇ ।
କେତେ କେତେ ରଥୀ ଗଲେ ଶୋଇ ସେ ।
ଶୁଣିବାକୁ ଆଶ୍ଚର୍ଯ୍ୟ ଅଟଇ ସେ । ୧୬ ।

ତ୍ରିଦଶମର୍ଦ୍ଦନ ବିପ୍ରବର୍ଦ୍ଧନ ନରେନ୍ଦ୍ରଙ୍କ ସପ୍ରାଣନ ।
ସେନାପତିଗଣ ରଣରେ ପଡ଼ିଣ ଗଲେ ଶମନ ସଦନ ସେ ।
ବହେ ରୁଧିର ନଦୀ ।
ଯହୁଁ ନ ମିଳଇ ଅନ୍ତ ଆଦ୍ୟ ସେ ।
ଦେଖି ବିସ୍ମୟେ ଅମର ବନ୍ଧ ସେ । ୧୭ ।

ଯତ୍ନ କରି ଶୁମ୍ଭ ବନ୍ଧୁସାନ୍ ଶୁମ୍ଭଙ୍କ ପ୍ରାଣ୍ୟେ ବଢ଼ାଇ ମାୟାରେ ।
କରୁଣ୍ଡୀ ଶୂଳ ବଳେ ସିଦ୍ଧ କୁଳ ଜନ୍ତୁଙ୍କୁ ମାଇଲା ଖରେ ସେ ।
ଦୈତ୍ୟକୁଳ ମୁକୁଟ ।
ନାନାପ୍ରକାରେ ଦେଇ କୁଠାଟ ସେ ।
ରଣଭୂମିରେ କରଇ ନାଟ ସେ । ୧୮ ।

ଖଡ୍ଗ ଅଗ୍ରେ ଢାଳ ଧରିଧରି ତୋଳି ଫିଙ୍ଗଇ ଦେବୀଙ୍କି ଟାଣେ ।
ହର ପଙ୍କଜାକ୍ଷୀ ହରଇ ତା ଦେଖି ଜଳକୁ ଏକଚାଣେ ସେ ।

କୋପେ ପୁଣି ଦଇତ ।
ଶୃଙ୍ଗେ ଟାଳି ଅନେକ ପର୍ବତ ସେ ।
ଶିବ ଶିରେ କସ୍ତୁଢ଼େ ଭୁବତ ସେ । ୧୯ ।
ଅପ୍ରମିତ ବାଣ ବର୍ଷି ସୁରନାଶ କାରଣୀ ତାହା କାଟିଲେ ।
କୋଟି କୋଟି ଶର ପ୍ରହାର ଅସୁରବଳଙ୍କୁ ସେ ସଂହାରିଲେ ସେ
ଦୈତ୍ୟ ହେଲେ ଉଚାଟ ।
ମରବାର ହୋଇଲେ ନିକଟ ସେ ।
ପ୍ରାଣ ଆତଙ୍କେ ମାରେ କୁହାଟ ସେ । ୨୦ ।
ଯେତେ ରଥୀମାନେ ଶୋଇଥିଲେ ରଣେ ସମସ୍ତେ ତହୁଁ ଉଠିଲେ
ଅସ୍ତ୍ରମାନ ଧରି ସର୍ବେ ଯୁଦ୍ଧ କରି ଦେବୀଙ୍କି ଯାଇ ଘୋଟିଲେ ସେ
ସଂଖ୍ୟେ ଅସଂଖ୍ୟ ହୋଇ ।
ଲକ୍ଷେ ଶଙ୍ଖ ଯନ୍ତ୍ରଁରେ ବାଜଇ ସେ ।
ଭୁଣ୍ଡେ କେ ଅବା ପାରିବ କହି ସେ । ୨୧ ।



ହେଲା ମହାନନ୍ଦ ମନ୍ଦିରେ ଉତ୍ସବ କୋଟି କୋଟି ନୃତ୍ୟକାର୍ଯ୍ୟ ।
ମହାରନ୍ଧ୍ରପ୍ରଦ ନାନାବିଧ ବାଦ୍ୟ ସୁନାଦକୁ ଅନୁସରି ସେ ।

କାକ ଗୃଧ୍ର ଶୃଗାଳ ।
ପୂରି ରହିଲେ ରଣମଣ୍ଡଳ ସେ ।
ଖାଇ ଧରି ବୁଲଇ କପାଳ ସେ । ୨୨ ।
ବରଜି ସୈନ୍ୟଙ୍କୁ ତରଜି ସୁରଙ୍କୁ ଗରଜି ଅଇଲା ସବଳେ ।
ଚଣ୍ଡୀ ଗଡ଼ରେ ମହିଷ ସ୍କନ୍ଧରେ ଶୂଳ ପ୍ରହାରିଲେ ବଳେ ସେ ।
ଭରି ଘୋର ଗର୍ଜନ ।
ତଳେ ପଡ଼ିଲା ଦୈତ୍ୟ ନନ୍ଦନ ସେ ।
କମ୍ପିଗଲା ଚଉଦଭୁବନ ସେ । ୨୩ ।
କମ୍ପମାନ ହୋଇ ଦୈତ୍ୟସେନା ଭଙ୍ଗି ଦଶଦିଗେ ପଳାଇଲେ ।
ଅବଶେଷ ହୋଇ ଯେତେ ଥିଲେ ରହି କେଶରୀ ତାଙ୍କୁ ପାଇଲେ ସେ
ଅସ୍ତ୍ର ଦଶା ଭଜିଲେ ।
ଥୋକେ ପାତାଳେ ଯାଇଁ ପଶିଲେ ସେ ।
ଥୋକେ ସାଗରେ ପ୍ରାଣ ତ୍ୟାଜିଲେ ସେ । ୨୪ ।
ବୃନ୍ଦାରକବୃନ୍ଦ ହୋଇଣ ଆନନ୍ଦ କରଣେ କୁସୁମ ବୃଷ୍ଟି ।
ଦୁନ୍ଦୁଭି ବଜାଇ ଅସନ୍ତି ଚଳାଇ ଆଗ କରି ପରମେଷ୍ଠୀ ସେ ।
ଅପସରା ନାଚନ୍ତି ।
ଦୁର୍ଗା ଜୟ ଗନ୍ଧର୍ବ ଗାଉନ୍ତି ସେ ।
ମଧୁସୂଦନ ଦେବ ଭଣନ୍ତି ସେ । ୨୫ ।

---

## ପଞ୍ଚମ ଛାନ୍ଦ

### ରାଗ—କାଳୀ

ଶଙ୍କାଦି ସ୍ତୁତି ଶୁଣ ହେ ଶକ୍ର ଦେବ ନୃପତିବର ।
ଶୁଣିଲେ ସିଦ୍ଧି ହୁଏ ଶପଥ ତାର ମୁକତି କର । ୧ ।
ନାନା ବାହନେ ନାନା ଭୂଷଣେ ବନ୍ଧୁଗଣ ମିଳି ।
ଦେବୀ ସ୍ଥାନରେ ବନ୍ଦାନ୍ତି କରେ ଘେନିଣ ଅର୍ଘ୍ୟଥାଳି । ୨ ।

ଦେବୀ ଚରଣ ତଳେ ଶରଣ ପଶି କରନ୍ତି ସ୍ତୁତି ।
ଜୟ ମହିଷ ପ୍ରାଣ ବିନାଶ କାରିଣୀ ଦଶମୂର୍ତ୍ତି । ୩ ।
ଜୟ ଅଖିଳ ସୁରମଣ୍ଡଳ ଭୟ ବିନାଶକର୍ତ୍ତ୍ରୀ ।
ଜୟ ଭୁବନ ପରିପାଳନ ସ୍ଥିତ ନାଥନ ମୂର୍ତ୍ତି । ୪ ।
ଯାହା ପ୍ରଭାବ ଅନନ୍ତ ଶିବ ଲେଶହିଁ ନ ଜାଣନ୍ତି ।
ସେ ଭଗବତୀ ହୋଇ ସୁପ୍ରୀତ ହରୁ ଯେ ଭବଭୀତ । ୫ ।
ଲକ୍ଷ୍ମୀ ରୂପରେ ସୁକୃତୀପୁରେ ଯେ ସଦା ପୂଜା ହୁଏ ।
ଅଲକ୍ଷ୍ମୀ ରୂପୀ ହୋଇ ସେ ପାପୀ ମନ୍ଦିରେ ଶୋଭାପାଏ । ୬ ।
ସକଳ ହୃଦେ ହୋଇଛ ଭଦେ ବୁଦ୍ଧି ବୋଲନ୍ତି ଯାକୁ ।
ହୃତ ଅହୃତ କ ଆଚ୍ଛାଦିତ କରେ ଯେ ଜଗତକୁ । ୭ ।
ଯାହାକୁ ଶ୍ରଦ୍ଧା ବୋଲନ୍ତି ମେଧା ସ୍ୱଧା ବୋଲନ୍ତି ଯାକୁ ।
କୁଳୀନ ନର ରଖି ମନ୍ଦର ସୁମନେ ପୂଜେ ତାକୁ । ୮ ।
ଅଚିନ୍ତ୍ୟ ଶକ୍ତି ଯାହାର ଖ୍ୟାତ ହୋଇଛି ତିନପୁରେ ।
ତ୍ରିଗୁଣାତ୍ମିକା ହୋଇ ଯେ ଏକା ବିହରେ ବ୍ରହ୍ମାଣ୍ଡରେ ।୯।
ଉପନିଷଦ ଭାବରେ ବେଦ ଯାହାକୁ ସ୍ତୁତି କରେ ।
ଯାହାର ସ୍ତୁତି ହେଲେ ବିସ୍ମୃତ ଅବିଦ୍ୟା ଏ ସଂସାରେ ।୧୦।
ଆଦ୍ୟାପ୍ରକୃତି ତୁମ୍ଭେ ତ ସତୀ ତୁମ୍ଭେ ତ ପତିବ୍ରତା ।
ତୁମ୍ଭ ବାହାରେ ଏ ବ୍ରହ୍ମାଣ୍ଡରେ ଅଛି କେ ସୁଖଦାତା ?୧୧।
ତୁମ୍ଭେ ତ ଶିଶୁ ବୋଲାଅ ହର ହୃଦପଙ୍କଜେ ଥାଇ ।
ପ୍ରତିଷ୍ଠା ଯାଚି କରନ୍ତି ହର ପାଦକୁ ହୃଦେ ଥୋଇ ।୧୨।
କୃପା ଈକ୍ଷଣ ପଡ଼ିଲେ କ୍ଷଣମାତ୍ରକ ଦୀନଜନେ ।
ସେହି ସୁପୁଣ୍ୟ ଲୋକହିଁ ଧନ୍ୟ ହୁଅଇ ଏ ଭୁବନେ ।୧୩।
ଭୁଞ୍ଜିଲ ପୁତ୍ର, ମିତ୍ର କଳତ୍ର ସହିତ ଇହ ସୁଖ ।
ନାନା ବିତ୍ତକୁ ଦିଅଇ ତାକୁ ଅନ୍ତରେ ହରି ଦୁଃଖ । ୧୪ ।
ଦୈତ୍ୟ ମାରଣେ ସମରାଙ୍ଗଣେ କଲ ଅନେକ ଯଶ ।
ତୁମ୍ଭ ମହିମା ନିନ୍ଦୁ ଗରିମା ଲେଶ କେ କରେ ଶେଷ ।୧୫।

ଖଣ୍ଡା ଖପର କୋଦଣ୍ଡ ଶର ତ୍ରିଶୂଳ ଚକ୍ର ଧରେ ।
ନାନା ଆୟୁଧମାନଙ୍କ ଖେଦ ନିକର ଛେଦ ଖରେ । ୧୬ ।
ପ୍ରାଚୀ ପ୍ରଭୃତି ଯାମ୍ୟ ଅବାଚୀ ଦିଗରେ ରଖ ରଖ ।
କରୁଣାମୟୀ କରୁଣା ବହ୍ନି ହର ଅମ୍ଭର ଦୁଃଖ । ୧୭ ।
ଏମନ୍ତେ ସ୍ତୁତି କରନ୍ତି ଅତି ସନ୍ତୋଷେ ସର୍ବସୁରେ ।
ନନ୍ଦନବନ ଫୁଲ ଚନ୍ଦନ ଲଗାଇ ଦେବୀ ଶିରେ । ୧୮ ।
ବିବିଧ ଉପହାର ପ୍ରଦୀପ ମାନ ବଢାଇ ଧୀରେ ।
ସୁଗନ୍ଧ ଧୂପ ଦେଇ ସନ୍ତାପ ତେଜିଲେ ଇଷ୍ଟିତରେ ।୧୯।
ଦେବଙ୍କ ପୂଜା ଘେନି ଗିରିଜା କୃପା ଅପାଙ୍ଗେ ଚାହିଁ ।
ବୋଲନ୍ତି ବର ମାଗ ସତ୍ୱର ଦେବି ମୁଁ ହୋଇ ବରଦ ।୨୦।
ଶୁଣି ଆନନ୍ଦ ତ୍ରିଦଶବୃନ୍ଦ ବୋଲନ୍ତି ମାହେଶ୍ୱରୀ ।
ଆମ୍ଭ ହୃଦରେ ସଦା ମୋଦରେ ଥିବ ଏ ରୂପ ଧରି ।୨୧।
ଯେ ପ୍ରତିଦିନ ଏ ସ୍ତୁତି ଗାନ କରନ୍ତି ଶୁଦ୍ଧ ମନେ ।
ପରମାପଦ ତାଙ୍କର ଛେଦ ହୋଇବ ଚନ୍ଦ୍ରାନନେ ।୨୨।
ବିପୁଳ ଧନ ଦାରା ନନ୍ଦନ ଲଭ୍ୟ ବନ୍ଧୁରେ ତୋଷି ।
ପ୍ରତିଷ୍ଠାବନ୍ତ ହେବ ସେ ମାତ ଭୁଞ୍ଜିବ ଭୋଗରାଶି । ୨୩ ।
ଏହୁ ବୋଲିଣ ସେ ଦେବୀ ପୁଣି ଚଳିଲେ ନିଜ ସ୍ଥାନେ ।
ଯେ ଯାହା ପଦ ଲଭି ସମ୍ପଦ ଭୁଞ୍ଜିଲେ ସୁରମାନେ । ୨୪ ।
ପୁଣି ଗଉରୀ ରୂପକୁ ଧରି କଲେ ସେ ଯେତେ ଗୀତ ।
ମଧୁସୂଦନ ଦେବ ଭଜନ କରିବେ ଅଗେ ଖ୍ୟାତ । ୨୫ ।

---

## ଷଷ୍ଠ ଛାନ୍ଦ

### ରାଗ—କାମୋଦୀ

ପୂର୍ବେ ଶୁମ୍ଭ ନିଶୁମ୍ଭ ପ୍ରତାପରେ ଅଦମ୍ଭ
ହୋଇ ସକଳ ସ୍ୱର୍ଗବାସୀ ।

ରତ୍ନ ମେରୁପୃଷ୍ଠରେ ସ୍ମରନ୍ତି ହୃଦସ୍ଥରେ
ନିସ୍ପୃରହର ମଦାଳସା ସେ । ସୁରମାନେ ।
ଆତୁରେ ଜଣାଣ କରନ୍ତି ।
ରକ୍ଷ ଗୋ ବାରେ ଭଗବତି ।
କିଏ ଜଗତ ଅଛି, ତୁମ୍ଭେ ନୋହିଲେ ସାହା
ନଷ୍ଟସ୍ତେ ବୁଡ଼ିଲା ଧରଣୀ ଗୋ । ଭଗବତି ! ୧ ।
ଯାହା ପାଦ ପ୍ରଭାବ କହିବେ ଶେଷଦେବ
ବୋଲି ସହସ୍ରମୁଖ ହେଲେ ।
ଶଙ୍କର ପଞ୍ଚାନନ ବଧୂ ଚତୁରାନନ
ହେଲେ ହେଁ ଅନ୍ତ ନ ପାଇଲେ ଗୋ । ଭଗବତି !
ଯାହା ମହିମା ପାରାବାର ।
ଘୋଟିଛି ଜଗତ ଭିତର ।
ଭକ୍ତଜନ ମାନସ ବହାରୀ ରାଜହଂସ
ତା ପାଦେ କୋଟି ନମସ୍କାର ଗୋ । ଭଗବତି ! ୨ ।
ସର୍ବଦା ସର୍ବଭୂତେ ନିବାସ କରି ଶତେ
ଦିଅନ୍ତି ସକଳ ସମ୍ପତ୍ତି ।
ସ୍ମରଣରେ ବିପତ୍ତି ନାଶ କରି ତୁଷ୍ଟିକି
ଯଶ ପ୍ରକାଶ ଏ ଧରଣୀ ଗୋ । ଭଗବତି !
ଶକ୍ତି ଯେ ସର୍ବ ଭୂତଙ୍କର
ନାହିଁ ଯାହାର ପରାପର
ଚତୁର୍ବର୍ଗ ସୁପ୍ରଦା ଅଟଇ ଯେ ସର୍ବଦା
ତା ପାଦେ ସଦା ନମସ୍କାର ଗୋ । ଭଗବତି ! ୩ ।
ଏକ ହୋଇ ଅନେକ ରୂପରେ ତିନିଲୋକ
ବ୍ୟାପି ଯେ ଅଛ ନିରନ୍ତର ।
ସଚରାଚର ଶକ୍ତି ବୋଲି ଯାହାକୁ ସ୍ତୁତି
କରନ୍ତି ସଦା ସୁର ନର ଗୋ । ଭଗବତି !

ଅପାର ସଂସାରେ ଯେ ସାର
ନାହିଁଟି ଆଦ୍ୟଅନ୍ତ ଯାର
ବ୍ରହ୍ମା ଶଙ୍କର ହର ଯାହାର ଅଜ୍ଞାକାରୀ
ତା'ପାଦେ ସଦା ନମସ୍କାର ଗୋ । ଭଗବତ ! ୪ ।
ଏମନ୍ତେ ସୁରଲୋକେ ସ୍ତୁତ କରନ୍ତି ଶୋକେ
ଜାହ୍ନବୀ ସ୍ନାନ ସମୟରେ ।
କ୍ଷଣ ମାତ୍ରକେ କଣ୍ଠେ ହୋଇ ଶିବ ବକ୍ଷସ୍ଥ
ଦେବଙ୍କୁ ବୋଇଲେ ସତ୍ୱରେ ସେ । ଭଗବତୀ !
ସଂପୂର୍ଣ୍ଣ ହେବ ମନୋରଥ
ନିକଟେ ସର୍ବେ ହେବେ ସୁସ୍ଥ
ତୋଷେ ଏମନ୍ତ ବାଣୀ କହନ୍ତେ ଠାକୁରାଣୀ
ଦେହରୁ କାଳୀ ହେଲେ ଜାତ ଗୋ । ଭଗବତୀ ! ୫ ।
ସେ ଅଙ୍ଗ ମାଗି ତାଙ୍କୁ ଗିରିରାଜ ଗୃହାକୁ
ଚଳନ୍ତେ ତ୍ରିପୁରସୁନ୍ଦରୀ ।
ଗଉରୀ ରୂପ ଧରି ହରିବେ ଦୈତ୍ୟଶିରୀ
ଏମନ୍ତ ଶକ୍ତିରେ ଶଙ୍କର ସେ । ଭଗବତୀ ।
ସିଂହକୁ ଘେନି ସଙ୍ଗତରେ
ବିହାର କରନ୍ତି ବନରେ
କନ୍ଦର୍ପ ଅନ୍ତରେ ବାଧିତା ବିପାକରେ
ଚଣ୍ଡ ମୁଣ୍ଡ ମିଳିଲେ ଖରେ ସେ । ଭଗବତୀ । ୬ ।
ତ୍ରୈଲୋକ୍ୟ ବିମୋହନ ରୂପ ଦେଖି ମଦନ-
ଶରେ ପୀଡ଼ିତ ହୋଇ ଧୀରେ ।
ବୋଲନ୍ତି ସେ ବଚନ କ୍ୱପାଇଁ ଘୋରବନ
ଭିତରେ ବୁଲ ଏକାନ୍ତରେ ଗୋ । କୃଶୋଦରି !
ଯାହାର ଅଟୁ ପ୍ରିୟବତୀ
ତାଠାରେ ନାହିଁ ଯେବେ ପ୍ରୀତ

ତ୍ରିଭୁବନ ଈଶ୍ୱର ଅଟଇ ଶୁମ୍ଭାସୁର
ସୁଖେ ଏଥା ସଙ୍ଗେ ରହ ମାତ ଗୋ ! କୃଶୋଦର ! ୭ ।
ଅସୁରଙ୍କ ବଚନ ଶୁଣି ହେଲେ ମଉନ
ଅଦୃଶ୍ୟ ହୁଅନ୍ତେ ପାର୍ବତୀ !
ସେ ଚଣ୍ଡ ମୁଣ୍ଡ ବେଗେ ଶୁମ୍ଭ ନିଶୁମ୍ଭ ଆଗେ
ଅଞ୍ଜଳି ଯୋଡ଼ଣି ଜଣାନ୍ତି ସେ । ଚଣ୍ଡମୁଣ୍ଡ !
କ୍ଷେ ଦେବ ଭୁବନଠାକୁର !
ଶୁଣିମା ହେଉ ଆମ୍ଭ ଗିର
ହେମ ଗିରି ଶିଖରେ ଦେଖିଲୁ ନୟନରେ
ଅପୂର୍ବ ଯୁବତୀ ତାହାର ହେ । ଦୈତ୍ୟରାଜ ! ୮ ।
ସୁରଙ୍କୁ ରଣେ ଜିଣି ନାନା ରତନ ଆଣି
ସମ୍ପାଦିଅଛୁ ନିଜ ପୁରେ
ଇନ୍ଦ୍ରଙ୍କୁ ଜିଣି ରଣେ ବାନ୍ଧିଅଛ ଆପଣେ
ଗଜରତନ ଉଲ୍ଲାସରେ ହେ । ଦୈତ୍ୟରାଜ !
ଅଶ୍ୱ ରତନକୁ ହରିଲ
କୁବେର ସନ୍ଦର ଲୁଟିଲ
ଯେ ଯାହା ପୁରେ ରତ୍ନ ସମ୍ପାଦି ଥିଲେ ଯତ୍ନ-
କରି ତା ସମସ୍ତ ଆଣିଲ ହେ ଦୈତ୍ୟରାଜ । ୯ ।
ସର୍ବ ରତନମୟ ହେଲା ତବ ଆଳୟ
ନାରୀରତନ ମାତ୍ର ନାହିଁ
ଆଣାଇ ସେ ଯୁବତୀ ତା ସଙ୍ଗେ କର ପ୍ରୀତି
ରହ ଧବସ ତୋଷ ହୋଇ ହେ । ଦୈତ୍ୟରାଜ !
କେଡ଼େ ସୁନ୍ଦର ହେବ ପୁଣି
ସେ ଯେବେ ହୋଇବ ଘରଣୀ
ଯେଣୁ ଅମୃତ ବାଣୀ ରମଣୀଶିରୋମଣି
ଆଣାଇ କର ହୃଦମଣି ହେ । ଦୈତ୍ୟରାଜ ! ୧୦ ।

ଚଣ୍ଡ ମୁଣ୍ଡ ବଚନ ଶୁଣି ଆନନ୍ଦ ମନ
ହୋଇ ସେ ନିଶାଚରପତି
ଡାକି ଧୂମ୍ରଲୋଚନ ଆଜ୍ଞା ଦେଲା ବହନ
ସତ୍ୱର ଆଣ ସେ ଯୁବତୀ ରେ । ମହାବୀର !
ଷାଠିଏ ସହସ୍ର ଅସୁର
ସେନା ସେ ହୋଇଲା ବାହାର;
ବହୁ ସୈନ୍ୟ ସଜାଡ଼ି ବଳେ କରଣି ରଢ଼ି,
ନିଶାଣି କରି ଆଗୁଁସାର ସେ । ଦୈତ୍ୟରାଜ ! ୧୧ ।
ନାନା ପ୍ରକାର ବାଜା ବଜାଇ ମହାରାଜା
ସ୍ଥାନରୁ ବେଗେ ଚଳିଗଲା,
କୁହୁଡ଼ି ପ୍ରାୟ କରି ଯାଇ ସେ ହେମଗିରି
ତଳପାଶରେ ଘେରିଗଲା ସେ । ମହାବୀର !
ଦେଖିଲା ସୁରନଦୀ କୂଳେ
ଗଉରୀ ଅଛି ତପୋବନେ
ଅକାଳ ଘଡ଼ଘଡ଼ି ପରାଏ ରଡ଼ି ଛାଡ଼ି,
ସେ ଦେବୀସମ୍ମୁଖରେ କହିଲା ସେ । ମହାବୀର ! ୧୨ ।
କିପାଇଁ ଏତେ ଦୁଃଖୀ ହୋଇ ଗୋ ଚନ୍ଦ୍ରମୁଖି
ଘୋର କାନନେ ତପ କରୁ,
ଜଟାଜୂଟକୁ ବାନ୍ଧି ବକଳ ଅଛୁ ପିନ୍ଧି
କହ ତୁ କାହାର ବଚ୍ଛୋଲୁ ଗୋ । ପଙ୍କଜାକ୍ଷି !
ତାହାକୁ ଏବେ ଅନୁମାନ
କେଉଁ କଥାକୁ ଅଛୁ ମନ,
କହ କହ ସୁଦନ୍ତି, ନ କର ମଥା ପୋତି
ତାହାଙ୍କୁ କରିବା ବିଧାନ ଗୋ । ପଙ୍କଜାକ୍ଷି ! ୧୩ ।
କର୍ଣ୍ଣ ଯୁଗଳ ଡେରି ଶୁଣ ରେ ସୁକୁମାରି
ଶୁମ୍ଭ ଯେ ତ୍ରୈଲୋକ୍ୟ ଈଶ୍ୱର,

କେଶବ ବିଧି ଶିବ		ବାସବ ଆଦି ଦେବ
ଯାହାର ଅଂଶନ୍ତ୍ରୁ କିଙ୍କର ଗୋ । ପଙ୍କଜାକ୍ଷୀ !
ତାହାର ଆଜ୍ଞା ଦେନ ଶିରେ
କିଛି ନ ଗଣୁର ମନରେ,
ସାଜ ହୋଇ ସତ୍ୱରେ		ଭଜ ପତଗ୍ୱାବରେ
ତା ସଙ୍ଗେ ବନ୍ଧୁର ରଙ୍ଗରେ ଗୋ । ପଙ୍କଜାକ୍ଷି ! ୧୪ ।
ଭଗବତୀ ବୋଲନ୍ତି		ଶୁଣ ଦୈତସନ୍ତତି
ସଂଗ୍ରାମେ ଜିଣିବ ତୁରିତେ,
ଯେ ଗର୍ବ ବିମୋଚନ		କରିବ ସେ ବନ୍ଧନ
ଯେ ଅଛି ମମବଳ ମୋଠେ ରେ । ନିଶାଚର !
ସେହି ମୋହର ପତି ଜାଣ
ଏ ମୋର ନିର୍ବନ୍ଧ ପ୍ରମାଣ
ଯେ ଏ ଜଗତଜିତା		ମୁଁ ତାହାର ବନିତା
କର ଯା ତାହାକୁ ଜଣାଣ ରେ । ନିଶାଚର ! ୧୫ ।



ଶୁଣି ଧୂମ୍ରଲୋଚନ		ବଚନ ବିଲୋଚନ
ଚଭୁସ ଗୃଭୁସ ବସ୍ତାର
ଚମତ୍କାର ହୁଙ୍କାର		ନିଶ୍ୱାସ ବାତ ଖର
ଶିଖରେ ପକ୍ଷୀ ପ୍ରାୟ କର ସେ । ଶାକମ୍ଭରୀ ।

ଦୁଷ୍ଟ ଦନୁଜଙ୍କୁ ସଂହାରି
ଭକ୍ତଙ୍କୁ ଦେବକୃଢ଼ ତାରି
ଅରୋହଣ କେଶରୀ ଚଢ଼େ ଉଲ୍ଲାସ ଧରି
ସଙ୍କଟେ ରକ୍ଷେ ଉଦ୍ଧାରିବ ସେ । ଶାକମ୍ଭରୀ ।୧୬।

ଦୈତ୍ୟ ନାହତ ଶୁଣି ଅସୁର ଚୂଡ଼ାମଣି
କ୍ରୋଧରେ ହୋଇଲା କାତର
ଉତ୍ପାତ ବାଟେ ହତ ..... ହେଲା ପ୍ରାନ୍ତ ପର୍ବତ
ସର୍ବାଙ୍ଗ କମ୍ପିଲା ତାହାର ସେ । ଶୁମ୍ଭାସୁର ।

ଚଣ୍ଡ ମୁଣ୍ଡଙ୍କୁ ଡକାଇ
କହିଲା କ୍ରୋଧଭର ହୋଇ
ଚଳ ଚଳ ଚଞ୍ଚଳ ହୋଇ ସେ ହିମାଚଳ
ଶୃଙ୍ଗକୁ ଯାଅ କନା ଧାଇଁ ହେ । ଚଣ୍ଡ ମୁଣ୍ଡ ।୧୭।

କାହାର ସେ ଦୁହିତା କାହାର ସେ ବନିତା
ତାହାର ପ୍ରିୟ ଅଛି କେହୁ,
ତୁମ୍ଭେ ସେଠାକୁ ଯାଇ ଯୁଦ୍ଧ କପାଁ ମାଗଇ
କି ମନ୍ତ୍ର ଯନ୍ତ୍ର ସେ ଜାଣଇ ହେ । ଚଣ୍ଡ ମୁଣ୍ଡ ।

ସହାୟ ଥିବ ଯେବେ ତାର
ସତ୍ୱର ଛେଦ ତାର ଶିର
ଧରି ତା କେଶ ବାସ ମୋ ପାଶେ ଘେନିଆସ
ନାଶ ହୃଦୟୁ ଦୁଃଖ ମୋର ହେ । ଚଣ୍ଡ ମୁଣ୍ଡ ।୧୮।

ବସିଧିବାରବର ନିଷ୍ଠୁର ଶୁମ୍ଭାସୁର
ଚଣ୍ଡ ମୁଣ୍ଡଙ୍କୁ ଅଜ୍ଞା ଦେଇ ।
ଚଳିଲା ଅନ୍ତଃପୁର ଜଳିଲା ହୃଦ ତାର
ଶାନ୍ତିଅନଳେ ଦେବାପାଇଁ ହେ । ଭକ୍ତମାନେ ।

ସଂପୂର୍ଣ୍ଣ ହୋଇଲା ଏ ଗୀତ
ନ ଧର ମନେ କିଛି ଛନ୍ଦ
ମଧୁସୂଦନ ଦେବ ଭଣନ୍ତି ମହାଦେବ—
ଚିନ୍ତା ଚରଣେ ରଖି ହୃଦ ହେ । ଭକ୍ତମାନେ ! ୧୯।

## ସପ୍ତମ ଛାନ୍ଦ

### ରାଗ—ଭସଚୋବଲା

ଶୁଣ ହେ ସୁରଥ ନୃପଭମଣି !
ଚଣ୍ଡମୁଣ୍ଡ ବେବେ ହେଲେ ମେଲାଣି,
ସୁରଥମାନଙ୍କୁ କରିଲେ ସଜ
ନାନା ରଙ୍ଗେ ନେଇ ବାନ୍ଧିଲେ ଧ୍ୱଜ ।
ବାଜଇ ବୀର ଡମରୁ ଯେ,
କୋଳାହଳ ଧ୍ୱନି କରି ସେ ଅବନୀ-
ମଣ୍ଡଳ ଭଲେ ଚମକ ଯେ । ୧ ।
ଚତୁରଙ୍ଗ ବଳ ଘେନି ସଙ୍ଗରେ
ଭ୍ରମୁଭମନା ହୋଇଲେ ସତ୍ୱରେ,
ପ୍ରଳୟ-ନଦୀ ପରି ସେ ହୋଇ
ଧୋଟିଗଲେ ହେମ ଗିରିକି ଯାଇ ।
ଦେଖିଲେ ସେ ମୁକ୍ତକେଶୀ ଯେ,
ସିଂହ ପରେ ବସି ଶଙ୍କର ମହିଷୀ
ଶର ସନ୍ଧାନନ୍ତି ହସି ଯେ । ୨ ।
ଦୃଷ୍ଟି ନାଶେ ଘୋର ବରଷାପର
ଘୋର ବାଣ ବୃଷ୍ଟି କରନ୍ତି ବୀର,
ଅଙ୍ଗ ଦେଖାଅ ତୋ ବଳ ବିକ୍ରମ
ଜାଣୁ ଜାଣୁ କପାଁ କଲୁ ଏ କର୍ମ ।

ଷମା ହେବ ଯେବେ ଦୋଷ ଗୋ,
ଛାଡ଼ ଅହଙ୍କାର୍ ଶୁମ୍ଭ ମହାବୀର
ଚରଣେ ଶରଣ ପଶ ଗୋ । ୩ ।
ଶୁଣି ଅସୁରଙ୍କ କଟୁ ବଚନ
ସିନ୍ଦୂର ପ୍ରାୟ ଦିଶିଲା ବଦନ,
ଭାଲପଟରୁ ବାହାରିଲେ କାଳୀ
ଗଳାରେ ଲମ୍ବିଅଛି ମୁଣ୍ଡମାଳ ।
ନବୀନ ଘନ ବରନା ଯେ,
ବିକଟ ମୁଖରେ ପ୍ରକଟ ହୋଇଛି
ଢଡ଼ଢ ପ୍ରାୟ ରସନା ଯେ । ୪ ।



ତୀକ୍ଷ୍ଣ କରବାଳ ପାଶ କପାଳ
ମୁକୁଳା କେଶ ଲୋଟେ ମହୀତଳ,
ଦନ୍ତେ ଲଗିଛନ୍ତି ଯେ ହାଡ଼ମାଳ
ପାଟଳ ନୟନ ବୁଲଇ କରାଳ ।
ଟହ ଟହ କରି ହାସ ଯେ
ଦେଖି ସୁରବୃନ୍ଦ ହୃଦୟ୍ୱାରଶଢ
ସେ କାଳେ ହେଲା ପ୍ରକାଶ ଯେ ।୫।

ଦ୍ୱୀପୀ ଚର୍ମକୁ କରି ପରିଧାନ,
ଅତି ବିସ୍ତାର କରଇ ଦଶନ,
ସ୍ତନଯୁଗ ଭଗ୍ନ ନାଭିମଣ୍ଡଳ
କମ୍ପଇ ପାଦ ଘାତେ ମହୀତଳ ।
ପ୍ରବେଶ ରଣ ଭୂମିର ସେ
ହେଲା ଉତପାତ ଦୈତ୍ୟ ଦାନବ-
ମାନେ ହୋଇଲେ କାତର ସେ ।୬।
ଜଠରେ ତାପ ଧାଇଁଲ କଙ୍କାଳ
ଆସ ରେ ଦଇତ ସମସ୍ତେ ମିଳି ।
କ୍ଷୁଧାରେ ଜଠର ଯାଉଛି ଜଳି
ଶାନ୍ତ କର ଦେଇ ପିଣ୍ଡକୁ ବଳି ।
ଏତେ କହି ମାରି ତାଳି ସେ,
କରାଳ ବଦନ ବମ୍ପାଇ ବନ୍ଧନ
ଦେଲା ଉର୍ଦ୍ଧ୍ୱେ ହୁଳହୁଳି ସେ । ୭ ।
ଦୂରରୁ ଫିଙ୍ଗି ଧାଇଁଲ ପାଶକୁ
ଦାନବମାନଙ୍କୁ ଅଣି ପାଶକୁ ।
ଛେଦଇ ଶିର ପକାଇ କପାଳ
ରକତ ପାନ କରି ହୁଏ ଭୋଳ ।
ନାଚଇ ଆନନ୍ଦ ମନେ ସେ,
ମର୍ଦ୍ଦିଇ ଗଜମାନଙ୍କୁ ଚରଣରେ
ଗର୍ଜଇ ମେଘ ସମାନେ ସେ । ୮ ।
ରଥୀମାନଙ୍କୁ ସାରଥି ସହିତେ
ଆକାଶକୁ ଫିଙ୍ଗି ଦେଇ ତୁରିତେ ।
ଶସ୍ତ୍ରାର କରି ଧାଇଁଲ ତୁଣ୍ଡକୁ
ଗିଳିଣ ଚୋପ କରଇ ମୁଣ୍ଡକୁ ।
ଭଉଁରି ମାରି ବୁଲଇ ସେ,

ଧୂଳସ୍ତୁ ଚଢ଼ାସ ଫଣୀସ୍ତେ ନିଶ୍ୱାସ
ପ୍ରଖର ଶର ପକାଇ ସେ । ୯ ।

ମନ୍ଦର ଅଚଳ ମନ୍ଥନ ଜଳଧି
ଅସୁର ବଳ ହେଲେ ହତବୁଦ୍ଧି ।
ଭାବରେ ଚନ୍ଦମୂର୍ତ୍ତି ପର ହୋଇ
ରହିଲେ ସମସ୍ତେ ଶସ୍ତ୍ର ପକାଇ
ହୋଇଲେ ରଣେ ବିମୁଖ ଯେ,
ଦେଖି ଚଣ୍ଡମୁଣ୍ଡ ହୋଇଣ ପ୍ରଚଣ୍ଡ
ମିଳିଲେ କାଳୀ ସମ୍ମୁଖ ଯେ । ୧୦ ।

କାଳୀର ଦେହକୁ ଭରଣ ଲକ୍ଷ
କୋଟି କୋଟି ବରଷିଲେ ବିଶିଖ ।
କ୍ଷଣକେ ଆସି ନିକଟେ ଯୁଟନ୍ତି
କ୍ଷଣକେ ପୁଣି ଅଦୃଶ୍ୟ ହୁଅନ୍ତି ।
ଧରିଣ ଗଦା ତୋମର ଯେ,
ପଟ୍ଟିଶ ଭୁଷଣ୍ଡି ବୁଲାଇ ସେ ଚଣ୍ଡୀ
ଉପରେ କଲେ ପ୍ରହାର ଯେ । ୧୧ ।

ଯୋଦ୍ଧା ଘଣ୍ଟା ଆଦ୍ୟ ଅଙ୍କୁଶଗ୍ରାହୀ
ସେନାପତିମାନେ ମିଳିଲେ ଭିଡ଼ି ।
ଅନେକ ଅନେକ ପୁଙ୍ଗ ସଙ୍ଗରେ
ଘେନିଣ ଯୁଝନ୍ତି ନାନା ରଙ୍ଗରେ ।
ଦେବୀଙ୍କୁ ମାରିବାପାଇଁ ସେ,
ଟାଣି ଧନୁ ରହି ବାଣ ବରଷନ୍ତି
ପ୍ରାଣକୁ ଭରସା ନାହିଁ ସେ । ୧୨ ।

ଯେତେ ବାଣ ଦେବୀ ଉପରେ ପଡ଼େ
ପର୍ବତେ ଲୋଷ୍ଟ୍ର ପ୍ରାୟେ ବାଜି ଝଡ଼େ ।

ଥୋକାଏ ଚେତେଜ ପଶି ନ ପାରନ୍ତି
ଥୋକେ ଶିର ନମସ୍କାର କରନ୍ତି ସେ ।
ହୁଅଇ ଉଲ୍କାପାତ ଯେ,
ଦେଖି ମହାଘୋର ସମର ଅମର-
ମାନେ ହୁଅନ୍ତି ଚକିତ ଯେ । ୧୩ ।

ଏମନ୍ତେ ରଣ ହୁଅନ୍ତେ ସୁଚୀର
କ୍ରୋଧରେ ଚଣ୍ଡୀକା ହୋଇ ଅସ୍ଥିର ।
ଝମକାଇ ଦେଇ କରବାଳକୁ
ଧଇଲେ ଚଣ୍ଡର ବାମ କରକୁ ।
କାଟିଲେ ଚଣ୍ଡମୁଣ୍ଡକୁ ଯେ,
ଚପଳା ପରସ୍ତେ ଧାଇଁ ଯାଇ ପୁଣି
ଛେଦିଲେ ମୁଣ୍ଡ ମୁଣ୍ଡକୁ ଯେ । ୧୪ ।

ସେନାପତିମାନଙ୍କୁ ଧରି ବେଗେ
ଶିରକୁ ଶିର କଚଡ଼ଇ ଆଗେ ।
ଘୁଡ଼ୁଣି ପଡ଼ନ୍ତି ପ୍ରାଣ ନିର୍ଘାତ
ଘୁଡ଼ଇ ରଣ୍ଡି ରଣେ ହୋଇ ମତ୍ତ ।
କ୍ଷଣକେ କଲା ନିପାତ ଯେ,
ଦୃଷ୍ଟି ଅଗୋଚରେ ଥୋକେ ନିଶାଚରେ
ପଳାଇଗଲେ ତ୍ୱରିତ ଯେ । ୧୫ ।

ଧରି ସେହୁ ବେନି ଦଇତ ଶିର
ଭେଟିଲେ ସତ୍ୱର ଦେବୀ ଘୁମ୍ଭୁର ।
ଆଜ ମୁଁ ରଣଯାଗେ ମହାପଶୁ
ପକାଇଲି ତୁମ୍ଭ କରୁଣା ବଶୁ ।
ଶୁମ୍ଭ ନିଶୁମ୍ଭ ନିଧନ ଗୋ,
କରିବ ଆପଣି ଲୋକ ପରିତ୍ରାଣି
କାରଣେ କରି ଯତନ ଗୋ । ୧୬ ।

ଦେଖି ଭଗବତୀ ହୋଇ ସୁମନ
ଭାଳୀକି ଭଳେ ବେଗେ ଆଲିଙ୍ଗନ ।
ଚଣ୍ଡ ମୁଣ୍ଡ ରଣେ ମାଇଲୁ ଯେଣୁ
ଜଗତେ ଚାମୁଣ୍ଡା ହୋଇଲୁ ତେଣୁ ।
ଚଳ ଏବେ ନିଜ ଧାମ ଗୋ ।
ଆଜ୍ଞା ଘେନି ଶିବ ହୋଇଲୁ ଅନ୍ତର
ପୂର୍ଣ୍ଣିକର ସୁରକାମ ଗୋ । ୧୭ ।

କୁସୁମ ବୃଷ୍ଟି କରି ଦେବୀ ଶିରେ
ଦୁନ୍ଦୁଭି ବଜାଇଲେ ସ୍ୱର୍ଗପୁରେ ।
ରଣ ପ୍ରସଙ୍ଗ କୁହାକୁହି ହୋଇ
ଆନନ୍ଦେ ସ୍ଥାନମାନଙ୍କୁ ଅରୋହି ।
ସୁରନାରୀମାନେ ସୁଣି ଯେ,
ଶୁମ୍ଭ ନିଶୁମ୍ଭଙ୍କ ମରଣ ନିମନ୍ତେ
କାହିଲେ ଭୁଜେ ତାରଣୀ ଯେ । ୧୮ ।

ଶ୍ରୀ ମଧୁସୂଦନ ଦେବ ନୃପତି
କହେ ସାଧୁଜନେ ହେବ ସୁମତି ।
ଯେହୁ ଭଗବତୀ ଗୀତ ଶୁଣନ୍ତି
ତାହାଙ୍କୁ ନୋହିବ ଆଉ ବିପତ୍ତି ।
ଭୁଞ୍ଜିବେ ସୁଖ ସମ୍ପଦ ସେ,
ଚଣ୍ଡ ମୁଣ୍ଡ ତାର ହୋଇଲେ ବଇର
ତୋଷେ ନେବେ ଦନ ସ୍ୱତ ସେ । ୧୯ ।

## ଅଷ୍ଟମ ଛାନ୍ଦ

### ରାଗ—କଲ୍ୟାଣଆହାରୀ

ଚଣ୍ଡ ମୁଣ୍ଡ ନାଶ ଶୁଣି ସେ ରାକ୍ଷସବଂଶଅବତଂସ ସେକାଳେ
ଜଳିଲା ହୃଦୟ ଚଳିଲା ନିର୍ଦ୍ଦୟ ଓଷ୍ଠରୁ ସେ କୋପ-ଅନଳେ ।
ସିଂହାସନରେ, ବସିଲା ଧରି ଅସିବର ।
ଫୁଲାଇ ନାସାକୁ ବୁଲାଇ ନେତ୍ରକୁ ମନ୍ତ୍ରୀମାନଙ୍କୁ କହେ ଗିର ।୧।
ଅହେ କାଳକେତୁ ଅହେ ଚିରକାୟୁ ହେ କାଳ ବକାଳ ଦୁର୍ଧର୍ଷ ।
ନାରୀ ମାତ୍ର ହୋଇ ଯାହା ସେ କରିଲା ଦେଖିଲ ଟିକି ତା ସାହସ ।
ଏବେ ଚଞ୍ଚଳ, ହୋଇ ସମସ୍ତେ ହୁଅ ଠୁଳ ।
ଆଜି ରଣ କରି ତାର ପ୍ରାଣ ହରି ଲିଭାଅ ମୋ ଚିନ୍ତା-ଅନଳ ।୨।

ଷି କୋଟି ମୁକୁଟବନ୍ଧା ଯେ ନିକୃଷ୍ଟ ଗିରି ପ୍ରାୟେ ଅଛ ମୋ ପାଶ ।
ନବକୋଟି ରଥୀମାନଙ୍କୁ ସାରଥୀ ସହିତ କରାଅ ସୁବେଶ ।
ଦନ୍ତୀ ପଦାତି, ସମସ୍ତେ ହୁଅ ଏକମନ ।
ସେ ସ୍ଥିର ଯୁବତୀ କାହା ବଳେ ମାତି କରଇ ମୋ ସ୍ମିତ ବର୍ଦ୍ଧନ ।
ଏମନ୍ତ ପ୍ରତିଜ୍ଞା କରି ଦେଇ ଆଜ୍ଞା ସକଳ ଅସୁରବଳଙ୍କୁ ।
ମନ୍ତ୍ର ଯନ୍ତ୍ର ଆଣି ଶିଖା କଲା ପୁଣି ଡକାଇ ଭୃଗୁନନ୍ଦନଙ୍କୁ ।
ବୋଲେ ଗୁରୁଙ୍କୁ, ତୁଇଁ ଅନୁକୂଳ ଯୁଦ୍ଧକୁ ।
ହେବ ଯେବେ ଯଶ ବନ୍ଧୁ ପଞ୍ଚଭୂତ ମିଳିବ ନିଷ୍ଟସ୍ତୁ ତୁମ୍ଭଙ୍କୁ ।୩।
ଏତେ କହି ଦୈତ୍ୟରାଜ ନିତ୍ୟକୃତ୍ୟ ସାରିଲା ଉଦବେଗ ହୋଇ
ବାନ୍ଧି ଶିରସ୍ତ୍ରାଣ ଧରି ଆଭରଣ ମଙ୍ଗଳାରୋପଣ ବଢ଼ାଇ ।
ପୁଣି ପାଶକୁ, ହକାରି ଭାଇ ନିଶୁମ୍ଭକୁ ।
ବୋଲେ ଘୁଞ୍ଚି ନାସ ସଜ ହୋଇ ଆସ ଦଳିବା ସେ ବାଳାବଳକୁ ।
ଏମନ୍ତରେ ଦମ୍ଭ କରି କଣ ଶୁମ୍ଭ ନିଶୁମ୍ଭକୁ ଘେନି ସଙ୍ଗରେ ।
ଯୁଦ୍ଧକୁ ଆରମ୍ଭ କଲା ପୂର୍ଣ୍ଣକୁମ୍ଭମାନଙ୍କୁ ଚଳାଇ ଆଗରେ ।

ହେମ ରଥରେ, ବାହିଲ୍ଲ ଶଶନ୍ତ ଚନ୍ଦ୍ରକ ।
ବାଜୁ ଅଶ୍ୱରତ୍ନ କାନ୍ତି ହେଲା ଯନ୍ତ୍ର କରଣି ସେ ହୋଇ ଚଞ୍ଚଳ ।୬।
ଶୁଭ ବାଞ୍ଛା କରି ଇନ୍ଦ୍ରଙ୍କୁ ସ୍ମରି ରଥରେ ଯାଇ ଶକେ କଲ୍ଲ ।
ବିବିଧ ପ୍ରମାଦ ବାଦ୍ୟର ନିନାଦ ବାଜନ୍ତେ ବ୍ରହ୍ମାଣ୍ଡ କମ୍ପିଲା ।
ସୈନ୍ୟ ଚଳନ୍ତେ, ଟଳିଲା ନାଗରାଜ ଫଣା ।
ଗଗନମଣ୍ଡଳେ ଉଡ଼ିବାରୁ ଧୂଳି ଦେବତାମାନେ ହେଲେ କଣା ।୭।
ସପ୍ତସିନ୍ଧୁ ଜଳ ହୋଇ ଏକ ମେଳ ଉଛୁଳି ପଡ଼ିଲା ପରାଏ ।
କପର୍ଦ୍ଦୀ ଅସୁରେ ଧାଇଁଣ ସତ୍ୱରେ ହିମାଦ୍ରି ବେଢ଼ିଗଲେ ଯାଇ ।
ଉଚ୍ଚେ ଡାକନ୍ତି, ସରିଲାଟି ତୋର ବଡ଼ାଇ ।
ଆଜ ମାରି ତୋତେ ଭକ୍ଷିବୁ ସମସ୍ତେ ରଖନ୍ତା ତୋର କେହି ନାହିଁ ।୮।
ଏ ବଚନ ଦେବୀ ଶ୍ରବଣି ପଦବୀ ପବା ପ୍ରାପ୍ତ ହେଲା ପ୍ରବେଶ ।
ହୋମେ ହୁତାଶନ ଜଳଇ ଯେସନ ତଥା ହେଲା ତେଜ ପ୍ରକାଶ
ସେହି ସମୟେ, ଅଷ୍ଟଚଣ୍ଡିକା ହେଲେ ଜାତ ।
ଲଢ଼ିବାକୁ ଯୁଦ୍ଧ ଯେ ଯାହା ଆୟୁଧ ବାହନ ଭୂଷଣ ସହିତ ।୯।
ବ୍ରହ୍ମାଣୀ ବଚନ ଧରି ଅକ୍ଷସୂତ୍ର କମଣ୍ଡଳୁ କରପଙ୍କଜେ ।
ଆରୋହି ମରାଳବରକୁ ବସ୍ତ୍ରର ଭୂଷଣମାନଙ୍କେ ବିରାଜେ ।
ତହିଁ ପ୍ରବେଶ, ଆସି ହୋଇଲେ ମାହେଶ୍ୱରୀ ।
ଚଢ଼ିଣ ବୃଷଭ ପ୍ରକାଶି ଡମ୍ବୁର ତ୍ରିଶୂଳବର କରେ ଧରି ।୧୦।
ଶକ୍ତିକୁ ଧରି ବଳେ କଉମାରୀ ମୟୂର ବରକୁ ଆରୋହି ।
ବୈଷ୍ଣବୀ ଆସି ଗଦା ଧନୁ ଅସି ଅରିଦରକୁ କରେ ବହି ।
ବଳେ ସଧୀର, ସ୍କନ୍ଧରେ ବସି ଗରୁଡ଼ର ।
ପ୍ରବେଶ ହେବାରେ ସଂଗ୍ରାମ ଭୂମିରେ ଦୈତ୍ୟଙ୍କୁ ହେଲା ଗରୁତର ।୧୧।
ସେକାଳେ ବରାହ ହୋଇଣ ବରାହ ରୂପ ଶୋଭା ବହି ବାରାହୀ ।
ଦେଖାଇ ଦଶନ ଜମ୍ବାଇ ରସନ ପ୍ରବେଶ ହେବାକୁ ବୁଲଇ ।
ଦିବ୍ୟ ଅମ୍ବର, ଭୂଷଣରେ ହୋଇ ଭୂଷିତ ।
ପନ୍ନଗ ବଇରି ପରେ ବଳେ କରି ରଣଯାଗକୁ ଦେଇ ଚିତ୍ତ ।୧୨।

ନରସିଂହ ପ୍ରାୟେ ବଢ଼ାଇଣ କାୟେ ନାରସିଂହୀ ଅସି ମିଳିଲେ ।
ଶରମାନଙ୍କର ଛଟାରେ ସେ ଘୋର ନକ୍ଷତ୍ରମାନଙ୍କୁ ଛୁଇଁଲେ ।
କର-ପଲ୍ଲବେ, ସୁନ୍ଦର ଦଶେ ଚନ୍ଦ୍ରବର ।
ଲବ ଚମତ୍କାର ବଦନ ଫୁତ୍କାର ବସି ପକ୍ଷୀରାଜ ଉପର । ୧୩ ।
ଐରାବତେ ଚଢ଼ି ଦନ୍ତପନ୍ତି ଭିଡ଼ି ଇନ୍ଦ୍ରାଣୀ ପ୍ରବେଶ ହୋଇଲେ ।
କରକଞ୍ଜ ପାଶ ଅଙ୍କୁଶ ପ୍ରକାଶ ହୋଇ ଦିବ୍ୟଶୋଭା ବହିଲେ ।
ସୁରସୁନ୍ଦରୀ, ଅଛନ୍ତି ଚଉପାଶେ ଘେରି ।
କି ଉପମା ଦେବା ନ ଦିଶଇ ଦେବାସୁର ପୁରେ ଅଉ ତା ପରି ।
ଚମକାଇ ଖଣ୍ଡା ପ୍ରବେଶ ଚାମୁଣ୍ଡା ମାଳା କରି ମୁଣ୍ଡାବଳୀଙ୍କୁ ।
ଜଉଶ୍ୱାସ ଖରେ ଉଡ଼େ ଉଡ଼ି କହେ ନାଚେ ଖାଇବାକୁ ବଳାଙ୍କୁ ।
ଦେବୀ ଚୁମ୍ବର, ସମସ୍ତେ ମିଳିଲେ ସତ୍ୱର ।
ସର୍ବ ଦନୁଜଙ୍କ ଗର୍ବ ପର୍ବତକୁ ଚୂରିବାକୁ ହୋଇ ଉଦ୍ଧୁର । ୧୪ ।
ସେ ସମୟେ ଶିବ କରଣି ତାଣ୍ଡବ ଉମାଙ୍କୁ ଦିଅନ୍ତି ଉତ୍ତର ।
ନ କର ସନ୍ଦେହ ରଖ ମୋର ସ୍ନେହ ନାଶ ଏ ସକଳ ଅସୁର ।
ଶୁଣି ପାର୍ବତୀ, ଦେହରୁ ଦେବୀ ଏ ବାହାର ।
ତ୍ରିଶୂଳ କପାଳ ଧରି କରତଳ ଦେବୀଙ୍କି କଲେ ନମସ୍କାର । ୧୫ ।
ସକଳ ଦେବୀ ଏ ବୋଲନ୍ତି ଗୋ ମା ଏ ଚଳ ଏବେ ଶୁମ୍ଭ ପାଶକୁ ।
ତାକୁ ଯାଇ କହ ନ କର କଳହ ଶରଣ ଯାଅ ଗିରିଜାଙ୍କୁ ।
ଶିବ ଅଗ୍ରରେ, ନାମ ହୋଇବ ଶିବଦୂତୀ ।
ତତ୍ର ଦିବାକର ଥିବାଯାଏ ତୋର ଧରଣୀରେ ଥିବ କୀରତି । ୧୬
ଶଙ୍କର ଦୂତିକା ଡାକୁଁ ହୋଇ ଏକା ଚପଳା ପରାଏ ଚଳିଲା ।
ଦୈତ୍ୟ ନାଶ ହେତୁ କିବା ଧୂମକେତୁ ଆକାଶରୁ ଛୁଟି ପଡ଼ିଲା ।
ରଣ ମଧ୍ୟରେ, ଉଭାହୋଇ ଶୁମ୍ଭାସୁରକୁ ।
ବୋଲନ୍ତି ରେ ମୂର୍ଖ ଜାଣି ଜାଣି ଦୁଃଖ-ଅନଳେ ଦହୁଛୁ ଦେହକୁ ।
ଅଚଳ ସମ୍ପତ୍ତି ଭୁଞ୍ଜିବାରେ ପ୍ରୀତି ଅଛି ଯେବେ ତୋର ଦେହକୁ ।
ତେଜ ଏ ଗାଦିମା ଭଜ ଗିରିଜେମା ଚରଣଯୁଗ-ପଙ୍କଜକୁ ।

ନାହିଁ ଯୁଦ୍ଧରେ, ଶ୍ରଦ୍ଧା ଅଛୁ ଯେବେ ତୋହର ।
ନିଶ୍ଚେ ନାଶଯିବ ନ ରହିବ ଜୀବ ଧଡ଼ରେ ଲୋଟିଯିବ ଶିର ।୧୯।
ଦୈତ୍ୟ ଶିରୋମଣି ଦେବୀ ବାଣୀ ଶୁଣି ତିରସ୍କାର କରି ଦେବୀଙ୍କି ।
ଧରି ପଞ୍ଚବାଣ ମୁଷ୍ଟି କରି ଟାଣି ଲକ୍ଷିଲା ସେ ଶିବଦୂତୀଙ୍କି ।
ଚଣ୍ଡି ଗର୍ଜିଲା, ଭରି ବଞ୍ଚାଇଲେ ସ୍ତୁତିକି ।
ରଣ ଭୂମିଯାକ କରଇ ଅଲୌକ ପ୍ରକାଶ ହାସ ବିଜୁଳିକି । ୨୦ ।
ସକଳ ଗୋସାଣୀଯାକ ମିଳି ପୁଣି ଘେରିଲେ ଅସୁର ବଳଙ୍କୁ ।
କୋପେ ଜରଜର ହୋଇ ଶୁମ୍ଭାସୁର ବରଷଇ ଶରଜାଳକୁ ।
ସେନା ସଇନ, ହେଲେ ସକଳେ ମିଶାମିଶି ।
ବାଣଶକ୍ତି ଭସ୍ମ କରିଦେଲେ ବୃଷ୍ଟି ରଣେ ହୋଇ ମହାତାପସୀ ।
ହୋଇ ଅସମ୍ଭାଳ କେ ବୋଲେ ସମ୍ଭାଳ ଏ ମୋର ମୁଦ୍ଗଳଘାତକୁ ।
କେ ବୋଲେ କାହାକୁ ଆଜ ତୋ ସାହାକୁ ପେଶିବି ଶମନପୁରକୁ ।
କାହା ହୃଦୟ, ଫାଡ଼ି କେ ପିଅଇ ରୁଧିର ।
ଦୁଇ ଚାରି ଶିର କାଟି କେଉଁ ବୀର ନାଚେ ଗଳାରେ କରିହାର ।
ଦନ୍ତ ଭିଡ଼ି ରଣେ କୁନ୍ତକୁ କେ ଟାଣେ କରନ୍ତେ ତାହାକୁ ପ୍ରହାର
କେ ତାର ପଛକୁ ଗୋଡ଼ାଇ ପଛକୁ ନେଲା ବେଗେ କାଟି ତା ଶିର
ବଳ ଦେଖାଇ, କେ କାହାକୁ ଧରି କଚୁଡ଼େ ।
ଦେଖି କେଉଁ ବଳୀ ଦେଲା ତାକୁ ଠେଲି ବଜ୍ରଘାତ ମାରି ଚୂପୁଡ଼େ ।
ଚକ୍ରଅଗ୍ନି ଭେଟ କରି କେତେ ଭଟ ନିମିଷ ମାତ୍ରେ ନ ପଡ଼ାଇ ।
ଭୁଞ୍ଜାଭୁଞ୍ଜି ହୋଇ ପଞ୍ଜାପଞ୍ଜି ରହି କଟନ୍ତି ଚର୍ମମାନ ବନ୍ଧି ।
କାହା ସାରଥୀ, ମୁଣ୍ଡ କାଟନ୍ତି କେଉଁ ରଥୀ ।
ତାର ପଦ୍ମପନ୍ତୀ ଶାରିକାଟିଲା ଗୃହ୍ଣି ହୃଦକୁ ତାର ଦେଲା ମନ୍ତ୍ରି ।
ଯହିଁରେ ଗଉରୀ ପଟୁଆର କରି ଧନୁ ଶର ଧରି ଯୁଝନ୍ତି ।
ହେଲେ ହେଉ ଯାହା କେ କହିବ ତାହା କରିବ ସୁରଥ ନୃପତି ।
ଯହିଁ ବ୍ରହ୍ମାଣୀ, କମଣ୍ଡଳୁ ଜଳ ପକାଇ ।
କରନ୍ତି ଦୈତ୍ୟମାନଙ୍କୁ ମୋହିତ ଜନନୀ ପ୍ରବଳରେ ରହି ।୨୧।

ମାଳମାଳ ରଥୀ ତ୍ରିଶୂଳରେ ଗୁନ୍ଥି ଭ୍ରମଣ କରେ ମାହେଶ୍ୱରୀ ।
ସେ କୁମାରୀ ଶକ୍ତି ବଜ୍ରତୁଲ୍ୟ ଶକ୍ତି ମାରି ଦୈତ୍ୟଙ୍କୁ ଦେଲା ସାରି ।
ଫିଙ୍ଗି ଚକ୍ରକୁ, ବଇଷ୍ଣବୀ ରିପୁ ଚକ୍ରକୁ ।
ଶିର କୋଟି କୋଟି ପକାଇଲା କାଟି କ୍ରୋଧରେ କମ୍ପାଇ ରଣକୁ ॥
କେତେକେତେ ଦୈତ୍ୟ ବାରାହୀରଦନ୍ତ ଘାତେ ଅସ୍ତ୍ରଦଶା ଭଜିଲେ
ନାରସିଂହୀ ଶକ୍ତି ଦେଖି ମହାଭୀତ ପାଇ ଥୋକେ ଅସ୍ତ୍ର ତେଜିଲେ ।
ବଜ୍ର ବରଷି, ଇନ୍ଦ୍ରାଣୀ କେତେ ଦେଲେ ନାଶି ।
ଭ୍ରମଇ ଚାମୁଣ୍ଡା ହୋଇ ପରଚଣ୍ଡା ମୁଣ୍ଡକନ୍ଦରୀକୁ ପ୍ରକାଶି ।୨୯।
ବେଳୁଁ କେବଳ ଯୁଦ୍ଧ ହୁଅନ୍ତେ ପ୍ରବୃଦ୍ଧ କ୍ରୋଧହୋଇ ଶୁମ୍ଭ ସେକାଳେ
ରଥ ନେଇ ଖରେ ବରଷଇ ଶିରେ କୋଟି କୋଟି ଶର ପ୍ରବଳେ
କୋପି ଛେଦିଲେ, ପ୍ରଚଣ୍ଡଶରେ କରି ଗଜସ୍ୱୀ ।
ପରସ୍ପରେ ତହିଁ ଯୁଝନ୍ତି ସେ ରଣ ଭିତରେ ମହାକୋପ ଧରି ॥
ନିଶାଚରକୁଳ ନିଶାଚର ବଳ ଦେଖାଇଣ କୋପେ ଧାଇଁଲେ ।
ଗରଜି ଦେବୀଙ୍କି ମାଇଲେ ଚମକ ଚାମୁଣ୍ଡା ଧରି ଚାପିଦେଲେ ।
ସୁର ଅସୁର, ସମସ୍ତେ ହୋଇଲେ ଚକିତ ।
ଧନ୍ୟ ଧନ୍ୟ ଡାକ ହୁଅନ୍ତେ ଅନେକ ନାକ ଲୋକେ ହେଲେ ମୋହିତ
କ୍ରୋଧଭରେ ପୁଣି ନିଶୁମ୍ଭ ଦୁଲକ୍ଷୀ ମୁଦ୍‌ଗର କରନ୍ତେ ପ୍ରହାର ।
କାଳନ୍ତେ ଉପରେ ଶରୀରୁଁ ରୁଧିର ଉଦ୍‌ଗାର କରି ସେ ଅସୁର ।
କ୍ଷଣେ ମୋହିତ, ହୁଅନ୍ତେ ରଥରେ ଦଇତ ।
ହୋଇ ବୀର ସଜ ରଣେ ରକ୍ତବୀର୍ଯ୍ୟ ଆସି ହୋଇଲା ଉପଗତ ॥
ଅକାଳ ବାଡ଼ବ ପ୍ରାୟେ କରି ଡାକ ଗଜସ୍ୱୀଙ୍କ ପାଶେ ଭେଟିଲା ।
ଅପ୍ରମିତ ଶର ବରଷି ଅସୁର ଦେବୀଙ୍କି ଉତ୍ତର କହିଲା ।
ଆଜ ଦେଖାଅ, କେତେ ପରାକ୍ରମ ତୋହର ।
ଖାଇ ତୋ ପିଶିତ ସ୍ନେହେଣି ତୃପ୍ତ କରିବ ଉଦର ମୋହର ।୩୦।
ଏତେ କହି ପୁଣି କ୍ରୋଧେ ଦୈତ୍ୟମଣି ମାୟାବଳେ କାୟା ବଢ଼ାଇ
ଆକାଶକୁ ଲୁଚି କୋଟି କୋଟି ଭିଡ଼ି ଦିଅଇ ଶରମାନ ତହିଁ ।

ସର୍ବ ଚଣ୍ଡିକା—ମାନେ ଘୋଟିଲେ ବେଗେ ଯାଇ ।
ପରଶୁ ପଟ୍ଟୀଶ ପଶ୍ୱଘ ଅଙ୍କୁଶ ତୋମର ପ୍ରହାରିଲେ ନେଇ ।
ନଗୁଁ ଗଳସ୍ରିତ ହୁଣ୍ଡିଲ ପ୍ରାତ୍ୟେକ ଯେତେ ରକ୍ତବିନ୍ଦୁ ପଡ଼ଇ ।
ସେହି ପ୍ରମାଣରେ ଶତ୍ରୁ ବିନ୍ଦୁ କରେ ରକତବୀର୍ଯ୍ୟ ଉପୁଜଇ ।
ଧରାମଣ୍ଡଳକୁ, ଧ୍ରୁବଲୋକ ଯାଏ ଘେରିଲେ ।
ରକ୍ତବୀର୍ଯ୍ୟ ଭସ୍ମ ହେବାରୁ ସଭୟ ହୋଇ କମ୍ପିଲ ସୁରଲୋକ ।
ଶିବ ପ୍ରାଣପ୍ରିୟା ଦେଖି ତାର ମାୟା ପାଶକୁ ଡାକି ଚାମୁଣ୍ଡାଙ୍କୁ ।
ବୋଲନ୍ତି ବଚନ ବିସ୍ତାର ବଦନ ପିଅ ଏ ଦୁଷ୍ଟ ରୁଧିରକୁ ।
ଆଜ୍ଞା ପ୍ରମାଣେ, ତୁଣ୍ଡକୁ ପ୍ରସାରି ରହିଲା ।
ରକ୍ତବୀର୍ଯ୍ୟ ତେଜ ସୂର୍ଯ୍ୟ ଗ୍ରାସିବାକୁ ରାହୁପ୍ରାୟେ ଶୋଭା ପାଇଲା ।
କାଳଦଣ୍ଡ କର କରବାଳ ଧରି ଛେଦିଲେ ଦେବୀ ତା ଶିରକୁ ।
ରକ୍ତବୀର୍ଯ୍ୟ ରକ୍ତ ପାନେ ପରିତୃପ୍ତ କଲେ ଚାମୁଣ୍ଡା ଉଦରକୁ ।
ମହୀତଳରେ, ଲୁଣ୍ଠି ତାର ମୁଣ୍ଡ ଗଡ଼ଇ ।
ଉତ୍ପାତ ନିର୍ଘାତ ଘାତରେ ପର୍ବତ ଶୃଙ୍ଗ ଛିଡ଼ିଲା ପ୍ରାୟ ହୋଇ ।
ମେଘ ଆଚ୍ଛନ୍ନରେ ଯେସନ ଅମ୍ବରେ ଦିଶଇ ଦିବାକର ଜ୍ୟୋତି ।
ରକ୍ତବୀର୍ଯ୍ୟ ହତ ହେବାରୁ ଦାନବମାନେ ହୋଇଲେ ହତକାନ୍ତି
ଛାଡ଼ି ସମର, ସମସ୍ତେ ହୁଅନ୍ତେ ଅନ୍ତର ।
ଆକାଶେ ଡିଣ୍ଡିମ ବଜାଇ କୁସୁମ ବରଷନ୍ତି ସୁର-ନିକର । ୩୫ ।
ସଙ୍ଗେ ଘେନି ସେନା ଗିରୀନ୍ଦ୍ରନନ୍ଦନା ବିଜୟ କରନ୍ତେ ସୁମନେ
ନାନା ଉତ୍ସବରେ ଆଳଟ ଚାମରେ ଖଟନ୍ତି ସୁରନାରୀମାନେ ।
ଜୟ ଶବଦ, ନାଦ ଉଠିଲେ ତତ୍ପୁରେ ।
ଶ୍ରୀମଧୁସୂଦନ ଦେବନୃପ ମନ ରହୁ ଅମ୍ବିକା ଶ୍ରୀପଦୁରେ । ୩୬ ।

## ନବମ ଛାନ୍ଦ

### ରାଗ—ଚୋଡ଼ି ଏକତାଳି

ସୁରଥ ନୃପତି ଶୁଣି, ଋଷିଙ୍କି କହନ୍ତି ବାଣୀ,
ସର୍ବଜ୍ଞ ପୁରୁଷ    କହ ହେ ପ୍ରବୀଣ
କହି କସ କଲ ପୁଣି, ଅସୁରମଣି । ୧ ।

ଋଷି କହନ୍ତି ବଚନ, ଶୁଣ ନୃପ ଦେଇ ମନ ।
ଶୁଣି ରକ୍ତବୀର୍ଯ୍ୟ    ମରଣ ଦନୁଜ-
ମଣି ଅତି କୋପମନ, ଛାଡ଼ି ଆସନ । ୨ ।

ଚମୂପତିଙ୍କୁ ଡକାଇ, ଚନ୍ଦ୍ରହାସ ଚମକାଇ,
ଶୃତୁର୍ଯ୍ୟ ଦେଖାଇ    ଚରଣ ଧଅଇ
ଚଳ ରଣେ ଶଙ୍ଖ ଦେଇ, ଚଞ୍ଚଳ ହୋଇ । ୩ ।

କୋଟି କୋଟି ରଥୀ ଥିବ, ନାସ୍ତି ଛାର ଜଣିଯିବ,
ଚତୁର୍ଦ୍ଦଶ ପୁର    ମଧ୍ୟରେ ଅସୁର
ପଣ କି ଆଜ ଦଶିବ, ସତ କହିବ । ୪ ।

ମନ୍ତ୍ରୀମାନଙ୍କୁ ବିଚାରି, ନିଶୁମ୍ଭକୁ ଆଗ କରି
ଅତ୍ୟନ୍ତ ଭୂଷଣ    କରାଇ ଘୋଷଣ
ରଥେ ବିଜେ ଅମସ୍ୱର, କୋଦଣ୍ଡ ଧରି । ୫ ।

କିଳିକିଳା ରବ କରି, ବସୁମତୀ ସୈନ୍ୟେ ପୂରି ।
ମାରି ମାରି ଡାକ    କରନ୍ତି ଅନେକ
ଘେରିଗଲେ ହେମଗିରି, ସୁର ବଇରି । ୬ ।

ଶୁଣି ଦୈତ୍ୟଙ୍କ ଚମକା, ଗିରୀନ୍ଦ୍ର-କୂଳ-ପତାକା
କେଶରୀ କାନ୍ଧରେ    ବିଜେ କଲେ ଧୀରେ
ଦେଖି ସକଳ ଚଣ୍ଡିକା, ନ କରି ଶଙ୍କା । ୭ ।

ଯେଣୁ ସେନା ଚେଷ୍ଟା ଯେତି, ହୋଇ ହେଲେ ପିଠାପିଠି
ଧରଣି ଯେ ଚୁଟି        କାଟନ୍ତେ ତା ଚୋଟି
ସେ ତାକୁ ମାରେ ଯାଲଟି, କରନ୍ତି ପାଟି । ୮ ।

ଯେ କାହାକୁ ମାରେ ଚୋନ୍ତ, ପେଟ ଚିର କାଢ଼େ ଅନ୍ତ,
ଦେଖି କେତେଁ ବୀର        ମୁଷ୍ଟିଏ ନିଷ୍ଠୁର
ଲୁଟି ଗୁଣ୍ଡ଼ଦେଲ ଦନ୍ତ, ହୋଇ ଜନ୍ତୁ । ୯ ।

ଦୁଇ ମେଘ ନାଦ କରି, ବରଷିଲ ପ୍ରାୟେ ବାରି
ବରଷନ୍ତି ବାଣ        ଗୀର୍ବାଣ ଦନୁଜ
ଦଶଦିଗଯାକ ପୂରି, ଘନ ଶର୍ବରୀ । ୧୦ ।

ନିଶୁମ୍ଭ ହୋଇ କୁପିତ, ଚମକ୍କ ଅସି ତ୍ୱରିତ
ଧରି ସେ ବେଗସ୍ତ୍ରୀ        ଶିରକୁ ପ୍ରହାରି
କଲ ସମରେ ମୋହିତ, ଭଲ ଦଇତ । ୧୧ ।

ନିଷିତ ଶର ବରଷି, କାଟନ୍ତେ ଦେବୀ ତା ଅସି
ନିଶୁମ୍ଭ ପ୍ରତାପୀ        ପୁଣି ହୋଇ କୋପୀ
ଶକତ ଦେଲ୍କ ପେଷି, ଦେବୀକୁ ନାଶି । ୧୨ ।

ଦେଖି ଦେବୀ ସେ ଶସ୍ତ୍ରକୁ, କୁଲିଶ ଫିଙ୍ଗି ଚକ୍ରକୁ
ଖଣ୍ଡ ଖଣ୍ଡ କରି        ପକାଇଲେ ଚୂରି
କରୀ ପ୍ରାୟେ ମୃଣାଳକୁ, ଧରି ଦମ୍ଭକୁ । ୧୩ ।

ଦେଖି ଅରୁଣ ନୟନ, ହୋଇ ସେ ଦୈତ୍ୟରାଜନ
ତ୍ରିଶୂଳ ତୁଲାଇ        ପ୍ରହାରନ୍ତେ ନେଇ
ମୁଷ୍ଟି ମାରି ଛଟରେ ଚୂର୍ଣ୍ଣି, ଦେବୀ ବହନ । ୧୪ ।

ପୁଣି ଗିରିଶୃଙ୍ଗ ପରି, ଗଦାଏ ଦେଲ ପ୍ରହାରି
କଲେ ତା ପ୍ରଶମ        ମାରଣ ବିଷମ
ଶୂଳକୁ ବିଚୂର୍ଣ୍ଣ କରି, ହରସୁନ୍ଦରୀ । ୧୫ ।

ଦନୁଜକୁଳ-ଚନ୍ଦ୍ରମା, ଧରି ହୃଦରେ ଗାରମା
ସୁତୀକ୍ଷ୍ଣ ପରଶୁ    ଦେଉନ ଆସୁ ଅସୁ
ନାଶ କଲେ ଗିରିଜେମା, ନ କରି କ୍ଷମା । ୧୬ ।

ପଛାନ୍ତେ ମହୀତଳକୁ, ଶୁମ୍ଭ ଯେ ବଳ ହୋପକୁ,
ଗଗନମଣ୍ଡଳେ    ରଥ ଭର କଲେ
ଧଇଲ ଅସ୍ତ୍ରଭୁଜକୁ, କରି ମାୟାକୁ । ୧୭ ।

ପରମ ଅଯୁଧମାନ, ଧରି ପୂରିଲ ଗଗନ,
ଦେଖି ସେ ବିଧାନ    ଦେବୀ କୋପମନ
କଲେ ପୁଣି ଶଙ୍ଖସ୍ୱନ, ସେ ଘନ ଘନ । ୧୮ ।

କୋଦଣ୍ଡକୁ କରେ ଧରି, ଶିଞ୍ଜିନୀ ମାଜ୍ଜି ଗଭିରି
କରନ୍ତେ ସେ ଘୋର    ଦୁଃସହ ଟଙ୍କାର
କମ୍ପିଗଲା ବସୁନ୍ଧରୀ, ଧନ୍ୟ ଗୃଭୁରୀ । ୧୯ ।

ଦଶ ଦିଶ ଚମକାଇ, ଘଣ୍ଟାକୁ ଦେଲେ ବଜାଇ,
ନଖ ଦନ୍ତକ୍ଷତ    କରିବାକୁ ମତ୍ତ
ହୋଇ କେଶରୀ ଗର୍ଜଇ, ଭୟ ଦେଖାଇ । ୨୦ ।

ଶିବଦୂତୀ ସେହୁ କାଳେ, ମିଳିଲେ ରଣମଣ୍ଡଳେ,
ନବୀନ କାଳିକା    ପରିଏ ବାଳିକା
ନାଚି ବୁଲେ କୁତୂହଳେ, ଅବନୀ ତଳେ ।୨୧।

କରେ ଧରି ତୀକ୍ଷ୍ଣ ଅସି, ସଂଗ୍ରାମେ ପଶଇ ଧସି
ହୋଇ ଭୂମି ବସି    ରଣକୁ ଆକର୍ଷି
ଗିଳଇ ଦନୁଜରାଶି, ସେ ହସି ହସି । ୨୨ ।

କାଳୀ ରଡ଼ି ପରମାଦ, ଶିବଦୂତୀ ସିହନାଦ
ପୂରନ୍ତେ ଜଗତ    ମଣ୍ଡଳେ ଦଇତ-
କୁଳ ହେଲେ ଚିନ୍ତାପଦ, ବଢ଼ିଲା ଖେଦ । ୨୩ ।

ବୀର ନିଶୁମ୍ଭ ସ୍ୱଜନ, କରେ ଧରି ଶରାସନ,
ବରଷି ବାଣକୁ ଆସଇ ରଣକୁ
କରି କୋଟି ଶଙ୍ଖସ୍ୱନ, ହୋଇ ସୁମନ । ୨୪ ।

ଅଯୁତ ଭୁଜକୁ ଧରି, ଦଇତକୁଳ-କେଶରୀ
କୋଟି କୋଟି ଶର କରଇ ପ୍ରହାର
କାଳୀ-ସିଂହକୁ ଅବୋଧ, ଚଞ୍ଚଳ କରି । ୨୫ ।

ଦେବୀକୁ ଦେବାକୁ ନାଶି, ଚକ୍ରକୁ ଧାଅନ୍ତେ ପେଷି
ଦୁର୍ଗତିନାଶିନୀ ଦୁର୍ଗା ଶର ଘେନି
ହେଲାରେ ଦେଲେ ବିନାଶି, ତେଜ ପ୍ରକାଶି । ୨୬ ।

ପୁଣି ଦୈତ୍ୟ କ୍ରୋଧ ଭରେ, ଗଦା ଏ ଧରି ପ୍ରହାରେ
ତୀକ୍ଷ୍ଣ ଅସି ଲତା, ଧରି ଗିରିସୁତା
କାଟିଲେ ଖଣ୍ଡଖଣ୍ଡରେ, ଦେଖନ୍ତି ସୁରେ । ୨୭ ।

କରେ ଧରି ମହାଶୂଳ, ଆସନ୍ତେ ସେ ମହାବଳ
ତା ହୃଦ-କମଳ କରି ଦୁଇଫାଳ
ମାରଣି ନାଜ ତ୍ରିଶୂଳ, ଦେଖାଇ ବଳ । ୨୮ ।

ତଳେ ପଡ଼ନ୍ତେ ଅସୁର, ଦେହରୁ ତାର ବାହାର
ହୋଇ ଏକ ବୀର ଧରନ୍ତେ ମୁଦ୍ଗର
କାଟିଲେ ଦେବୀ ତା ଶିର, ରଣଭୂମିର । ୨୯ ।

ପ୍ରାଣ ହାରି ସେ ପଡ଼ିଲା, ତନୁପୁର କମ୍ପିଗଲା
ସିଂହ ଯାଇ ଖରେ ଦଶନ ନଖରେ
ଥୋକେ ବୀର ସଂହାରିଲା, କୋପେ ଜଳିଲା । ୩୦ ।

ଚାମୁଣ୍ଡା ଶଙ୍କରଦୂତୀ, ଖାଇ ରକତ ଭୂପତି
ମନ୍ତ୍ରପୂତ ପାଣି ପକାଇ ବ୍ରହ୍ମାଣୀ
ମୋହିତ କେତେ କରନ୍ତି, ରଣେ ଭ୍ରମନ୍ତି । ୩୧ ।

ମାହେଶ୍ୱରୀ ଶୂଳ ଘାତେ, ନାଗକୁ ଭଜିଲେ କେତେ
ବଇଷ୍ଣବୀ ଚକ୍ର ଘାତେ ଦୈତ୍ୟଚକ୍ର
ଛିଣ୍ଡି ପଡ଼ିଲେ ଭୂବନେ, କାହିଁ ବା କେତେ । ୩୨ ।
ପ୍ରସୂନ ବୃଷ୍ଟି ତ୍ରିଦଶ, କରି ହୋଇଲେ ସନ୍ତୋଷ
ଶ୍ରୀମଧୁସୂଦନ ଦେବ ଯେ ଅଞ୍ଜନ
ଚରିତ କଲେ ପ୍ରକାଶ, ହୋଇ ଉଲ୍ଲାସ । ୩୩ ।

---

## ଦଶମ ଛାନ୍ଦ

### ରାଗ—ଚିନ୍ତା କେଦାର

ରଣେ ହତ ହୁଅନ୍ତେ ନିଶୁମ୍ଭ, କ୍ରୋଧେ ଦେବୀଙ୍କି କହଇ ଶୁମ୍ଭ
ଏତେ ଦେବୀଙ୍କର ବଳରେ ସମର
କରି ଦେଖାଇଲୁ ସିନା ଦମ୍ଭ ଗୋ, ସୁନ୍ଦରି । ୧ ।
ଦେବୀ ତାହାକୁ ହସି ବୋଲନ୍ତି, ଏ ତ ଅଟନ୍ତି ମୋର ବିଭୂତି
ମୋ ଦେହରେ ଲୀନ ହୋଇବେ ବହନ
ଦେଖ ଦେଖ ତୁହି ମୂଢ ମତିରେ, ଦଇତ । ୨ ।
ସର୍ବ ଚଣ୍ଡିକା ଶୁଣି ଏମନ୍ତ, ଦେବୀ ଦେହେ ହୁଅନ୍ତେ ଗୁପତ
ବୋଲନ୍ତି ଅମ୍ବିକା, ଏବେ ହେଲି ଏକା
ପାନ କରିବାକୁ ତୋ ରକତରେ, ଦଇତ । ୩ ।
ଦୈତ୍ୟକୁଳ-ଅମଳ-ତପନ, ଶୁଣି, ଦେବୀ ନିଷ୍ଠୁର ବଚନ
କୋଟି କୋଟି କାଣ୍ଡ ଛାଡ଼ିଲା ପ୍ରଚଣ୍ଡ
ଅତି ବେଗେ ସେ କାଳେ ବହନ ସେ, ଦଇତ । ୪ ।
ସଦାଶିବ-ସମାଧିଖଣ୍ଡନା, ଦବ୍ୟଶର କରଣ ସର୍ଜନା
ଦୈତ୍ୟ ହୃଦ ଲଖ କରଣ ବିଶିଖ
ବରଷନ୍ତି ହୋଇ କୋପମନା ସେ, ଅମ୍ବିକା । ୫ ।

ଶର ବରଷନ୍ତ ସେ ନିବାରି, ବାରିଧର ବରଷେ କି ବାରି
ବାରିଜାକ୍ଷୀ ହୃଦ ବାରିଜଙ୍କୁ ଖେଦ
ସେହ୍ନ ଦଅଇ ଧନୁକୁ ଧରି ସେ, ଦଇତ । ୬ ।

ପ୍ରଚଣ୍ଡଶରେ ଦେବୀ ତାହା କାଟି, ଶର ବରଷନ୍ତି କୋଟି କୋଟି
ରହ ରହ ଡାକ ଭିଡରେ ଚମକ
ପଡ଼ି ପଡ଼ଇ ବ୍ରହ୍ମାଣ୍ଡ ଫୁଟି ସେ, ରାଜନ । ୭ ।

ହେମପର୍ବତ ଚଉପାଶରେ, ରଥ ଭ୍ରମଣ କଲା ପ୍ରକାରେ
ଗିରିଜାଙ୍କୁ ଘେରି ମାରନ୍ତେ ମୁରାରି
ବେଗେ ବୁଲିଲେ ଦଶଦିଗରେ ସେ, ରାଜନ । ୮ ।

ମୁନିଜନ ବସ୍ତ୍ର ବରଣ, ବେଳୁଁ ବେଳ ହୋଇଲା ଦାରୁଣ
ଅସି ତୁମ୍ବ ଗଦା ଶକ୍ତି ଶରଘାତ
ଦିବା ଦିଶିଲା ନିଶି ସମାନ ସେ, ରାଜନ । ୯ ।

ଘୋର ତୀକ୍ଷ୍ଣ ଶୂଳ ମୁଟେ ମାରି, ଧନୁ କାଟିଲେ ତାର ଗର୍ଜି
କୋପ କରି ଦୈତ୍ୟ ଅସନ୍ତେ ଅଦିତ୍ୟ
ତେଜ ସମାନ ଖଡ଼ଗ ଧରି ସେ, ରାଜନ । ୧୦ ।

ଦେବୀ ଦେଖାଇ ଶ୍ରୀହସ୍ତ ଭଙ୍ଗୀ, ଘୋର ଅସିତ ଚକ୍ରକୁ ଫିଙ୍ଗି
ସାରଥୀ ସହିତେ ଖଡ଼ଗ ତୁରିତେ
ଏକାବେଳକେ କାଟିଲେ ଜଗି ସେ, ରାଜନ । ୧୧ ।

ପୁଣି ମୁଦ୍ଗର ଧରି ଅସୁର, ଶୁଣ୍ଡେ ଧାଇଁ କରନ୍ତେ ପ୍ରହାର
କରି କପଟଦୃଷ୍ଟି ବଜ୍ର ସମ ମୁଷ୍ଟି
ଦେବୀ ପ୍ରହାରିଲେ ଉରେ ତାର ସେ । ରାଜନ । ୧୨ ।

ପଡ଼େ ଭଗ୍ନାନଶାସ୍ତ୍ରୀ ତଳରେ, ତୀକ୍ଷ୍ଣ ଶୂଳ ମାରିଲେ ଛାତିରେ
ଦେବୀ ମୁଖ ଗୃହୁଁ ପ୍ରାଣକୁ ହରାଇ
ଶୁମ୍ଭ ପଡ଼ିଲା ରଣଯାଗରେ ସେ, ରାଜନ । ୧୩ ।

ପ୍ରାଣ ପ୍ରସ୍ଥାଣ ସମୟେ ତାର, ସପ୍ତଦ୍ୱୀପ ହୋଇଲେ କାତର
ଅଷ୍ଟ କୁଳାଚଳ ସପତ ସମୁଦ୍ର
କମ୍ପି ହୋଇଗଲେ ଥରହର ସେ, ରାଜନ । ୧୪ ।
ଦିଗମାନ ପ୍ରସନ୍ନ ହୋଇଲା, ପୁଣ୍ୟ ପବନ ଧୀରେ ବହିଲା
ଶାନ୍ତ ହୋଇ ତେଜ ପ୍ରକାଶିଲେ ସୂର୍ଯ୍ୟ
ମାର୍ଗ ବାହିନୀ ନଦୀ ହୋଇଲା ସେ, ରାଜନ । ୧୫ ।
ସ୍ୱର୍ଗବାସୀବର୍ଗ ଆସି ତହିଁ, ଭର୍ଗ ପ୍ରିୟାଙ୍କୁ ପୂଜିବା ପାଇଁ
ଅର୍ଘ୍ୟ ସ୍ଥାଳି ଧୂପ ପ୍ରସୂନ ପ୍ରଦୀପ
ଘେନି ମିଳିଲେ ଆନନ୍ଦ ହୋଇ ସେ, ରାଜନ । ୧୬ ।
ଭକ୍ତି ଭାବରେ ହୋଇ ସନ୍ତୋଷ, ଚଣ୍ଡୀଚରଣ ଯୁଗଳୁ ଆଶ
ଶ୍ରୀ ମଧୁସୂଦନ ଦେବନୃପମନ-
ଭୃଙ୍ଗ ଚୁମ୍ବଇ ରାଜ ଦିବସ ହେ, ରାଜନ । ୧୭ ।

---

## ଏକାଦଶ ଛାନ୍ଦ

### ରାଗ—ଭୂପାଳ

ଶୁଣ ହେ ସୁରଥ ଏଥି ଉତ୍ତାରୁ କଥା
ଶାନ୍ତ ହୁଅନ୍ତେ ଦେବୀଙ୍କ ହୃଦୟୁ ବ୍ୟଥା । ୧ ।
ଆଗ କରଣ ଶ୍ରୀ ହରି ପରମେଷ୍ଠୀ
ତହିଁ ମିଳିଲେ ସକଳ ସୁରଗୋଷ୍ଠୀ । ୨ ।
ବନ୍ଦାପନା କଲେ ଧରି ଅର୍ଘ୍ୟସ୍ଥାଳି
ଦେବୀ ଧାମରେ ପକାନ୍ତି ନିଉଛାଳି । ୩ ।
ବେଦବିଧିରେ ଅନେକ ଦେଇ ବଳି
ପ୍ରଦକ୍ଷିଣ ସାରି ହେଲେ କୃତାଞ୍ଜଳି । ୪ ।
ରଖି ଦେବୀ ପଦପଦ୍ମେ ଚିତ୍ତବୃତ୍ତି
ଭକ୍ତିଭାବରେ କଲେ ଅନେକ ସ୍ତୁତି । ୫ ।

ଜୟ ପ୍ରସନ୍ନ ସଙ୍କଟ ସଂହାରିଣୀ
ଜୟ ଅଖିଳ ଜଗତ ଠାକୁରାଣୀ । ୬ ।
ତାରେ ପ୍ରସୀଦ ତ୍ରୈଲୋକ୍ୟ ଈଶ୍ୱରୀ
ବିଶ୍ୱ ପାଳିବାକୁ ଅଛ ଅବତରି । ୭ ।
ବିଶ୍ୱରୂପିଣୀ ବିଶ୍ୱକୁ ଅଛ ଧରି
ବିଶ୍ୱ ଅମ୍ବିକା ତୁମ୍ଭେ ଗୋ ମାହେଶ୍ୱରୀ । ୮ ।
ମହୀ ସ୍ୱରୂପକୁ ଧରି ରହିବାରେ
ଏକା ଆଧାର ସ୍ୱରୂପା ଜଗତରେ । ୯ ।
ଅପରୂପରେ ସଚରାଚର ବ୍ୟାପୀ
କାର୍ଯ୍ୟ ବଶୁଁ ସତ୍ତ୍ୱ ରଜ ତମ ରୂପୀ । ୧୦ ।
ହୋଇ ବିହାର କରୁଛ ଭୁବନରେ
ତୁମ୍ଭ ମହିମା ଅଗମ୍ୟ ନିଗମରେ । ୧୧ ।
ବିଦ୍ୟା ସମସ୍ତ ଅଟେ ତୁମ୍ଭର ଭେଦ
ତୁମ୍ଭ ପାଇଁ ସିନା ସର୍ବ ଶାସ୍ତ୍ର ବେଦ । ୧୨ ।
ଏକା ହୋଇ ପୂରିଅଛ ବ୍ରହ୍ମାଣ୍ଡକୁ
ଆଉ ଅବା ସ୍ତୁତି କରିବା କାହାକୁ । ୧୩ ।
ସର୍ବ ଜନ ହୃଦେ ବୁଦ୍ଧି ରୂପେ ରହି
ସ୍ୱର୍ଗାପବର୍ଗକୁ ଦିଅ ଦୟା ବହି । ୧୪ ।
ସର୍ବମଙ୍ଗଳଦାୟିନୀ ଶିବା ଉମା
ସର୍ବାର୍ଥସାଧିକା ସମ୍ପୂର୍ଣ୍ଣକାମା । ୧୫ ।
ସୃଷ୍ଟି-ସ୍ଥିତି-ଅନ୍ତ-ଶକ୍ତି-ସୁଲକ୍ଷଣା
ଦୀନଜନ-ପରିତ୍ରାଣ-ପରାୟଣା । ୧୬ ।
ସନାତନୀ ଗୁଣମୟୀ ଗୁଣାଶ୍ରୟା
ମୁନିମାନଙ୍କ ମୋହକ ତୁମ୍ଭ ମାୟା । ୧୭ ।
ହଂସଯୁକ୍ତ ବିମାନରେ ବସି ରଣେ
ଧରି ବ୍ରହ୍ମାଣୀ ରୂପକୁ ସୁର ତ୍ରାଣେ । ୧୮ ।

କୁଶଜଳ ସିଞ୍ଚି ଦୈତ୍ୟ କମୋଦ୍ଧୃତ
ତୁମ୍ଭ ପ୍ରଭାବ କେବା କରବ ତୁଲ୍ୟ । ୧୯ ।
ଶୂଳଚକ୍ରାଦ୍ୟଧାରିଣୀ ମାହେଶ୍ୱରୀ
ଚଢ଼ି ବୃଷଭକୁ ଦେଲ ଦୈତ୍ୟ ମାରି । ୨୦ ।
ନୀଳକଣ୍ଠ ପୃଷ୍ଠ କରି ଅବଲମ୍ବ
ମହାଶକତ ଧରିଲ ଜଗଦମ୍ବ । ୨୧ ।
କୌମାରୀ ରୂପରେ ଅସୁର ମାରି
ପୁଣି ଶଙ୍ଖଚକ୍ର ଗଦା ଅସି ଧରି । ୨୨ ।
ବଇଷ୍ଣବୀ ରୂପେ ପକ୍ଷୀରାଜେ ବସି
କେତେ କେତେ ଅସୁରଙ୍କୁ ଦେଲ ନାଶି । ୨୩ ।
ଦନ୍ତ ଅଗ୍ରେ ଧରିଲ ବସୁନ୍ଧରୀ
ସେହି ରୂପକୁ ଅବଲମ୍ବ କରି । ୨୪ ।
ଦୈତ୍ୟମାନଙ୍କୁ କରପଙ୍କଜେ ବଧି
ନଷ୍ଟ କଲ ଦନୁଜଙ୍କୁ କଷ୍ଟ ଦେଇ । ୨୫ ।
ଦୈତ୍ୟ ମାରଣେ ତୁମ୍ଭେ ଉଦ୍ଧତ ହୋଇ
ନରସିଂହ ରୂପେ ଶଙ୍ଖଚକ୍ର ବହି । ୨୬ ।
ତ୍ରିପୁର ଭଇରବଙ୍କ ଭଗବତୀ
ତୁମ୍ଭ ପ୍ରଭାବ କେ କହି ପାରେ ଖ୍ୟାତ । ୨୭ ।
ବଜ୍ରଧର ରୂପ କରି ଅଙ୍ଗୀକାର
ବଜ୍ର ପାଶ ଅଙ୍କୁଶକୁ ଧରି କର । ୨୮ ।
ଐରାବତ ପୃଷ୍ଠରେ ବଜେ କରି
କେତେ କେତେ ଦୈତ୍ୟ ଗର୍ବ ଦେଲ ଚୂରି ।୨୯।
ଶିବଦୂତ ରୂପେ ପୁଣି ଅବତରି
ମହାସାଗରେ ଜଗତ ଗଲ ପୂରି । ୩୦ ।
ତୁଷ୍ଟ ହୋଇ ଦୈତ୍ୟବଳ ଚୂର୍ଣ୍ଣିକଲ
ପୂର୍ଣ୍ଣ ମନୋରଥେ ଗଲେ ସୁରକୁଳ । ୩୧ ।

ଧର ପ୍ରଚଣ୍ଡ ଚାମୁଣ୍ଡା ସ୍ୱରୂପକୁ
କରେ ଧରିଲ ତୀକ୍ଷ୍ଣ କୃପାଣକୁ । ୩୨ ।
କାଟିଲ କୋଟି କୋଟି ଦୈତ୍ୟ ଶିର
ମାଳି କରି ଲମ୍ବାଇଲ ଯେ ଗଳାର । ୩୩ ।
ସର୍ବଶକ୍ତିମୟୀ ସର୍ବସ୍ୱରୂପରେ
ସର୍ବେଶ୍ୱରୀ ଅଛ ପୂର୍ବ ବ୍ରହ୍ମାଣ୍ଡରେ । ୩୪ ।
ଲଜ୍ଜା ମହାଲକ୍ଷ୍ମୀ ମହାବିଦ୍ୟା ପୁଷ୍ଟି
ସ୍ୱଧା ସ୍ୱାହା ମେଧା ସ୍ମୃତି ବୋଲେ ତୁଷ୍ଟି ।୩୫ ।
ତୁମ୍ଭ ବଦନ ଲାବଣ୍ୟସୁଷମାକୁ
ତିନିପୁରେ ନ ଦେଖିଲି ଉପମାକୁ । ୩୬ ।
ତ୍ରିନୟନରେ ହୋଇଛ ସୁରଞ୍ଜିତ
ଦରଶନ ମାତ୍ରେ ହରେ ହର ଶତ୍ରୁ । ୩୭ ।
କାତ୍ୟାୟିନୀ ସର୍ବ ଭୂତଭୟ ହର
ସେହୁ ମୁଖଛବିକି ବିସ୍ତାର କର । ୩୮ ।
ଘୋର ଅସୁରନିବହ ପ୍ରାଣହର
ଯେଉଁ କରାଳଶୂଳ ବହୁଛ କର । ୩୯ ।
ସଦା ମହାଭୟରୁ ସେ ଥାଉ ରଖି
ଉଣା ନ କର କରୁଣା ଚନ୍ଦ୍ରମୁଖି । ୪୦ ।
ଯେଉଁ ଘଣ୍ଟା ଧ୍ୱନିରେ ପୂରୁଛି ଜଗତ
କଲା ଦୁଷ୍ଟ ଦନୁଜଙ୍କୁ ମୋହିତ । ୪୧ ।
ଘୋର ପାପରୁ ଅମ୍ଭର ଦେଉ ଦହୁ
କୃପାକର ଭାବେ ଅନୁକମ୍ପାମୟି । ୪୨ ।
ଦୈତ୍ୟ ରକ୍ତ ମାଂସରେ ସୁପିଙ୍ଗଳ
କରେ ବିସ୍ତରିଲ ଯେ କରବାଳ । ୪୩ ।
ଅଶୁଭକୁ ନାଶି ହେଉ ଶୁଭପ୍ରଦ
ଦୀନଜନଠାରେ ହୁଅ ଦୟା ପଦ । ୪୪ ।

ସୃଷ୍ଟିପାଳନରେ କର ତୁଷ୍ଟି ବୃଦ୍ଧି
ଇଷ୍ଟ ହୋଇ ଅପହର ଦୁଷ୍ଟବ୍ୟାଧି । ୪୫ ।
ନଷ୍ଟ କଲ ଅସୁରଙ୍କୁ ହୃଷ୍ଟ ହୋଇ
ଇଷ୍ଟ ଫଳ ଦେଲ ମାତ କଷ୍ଟ ପାଇ । ୪୬ ।
କୋଟି କୋଟି ଦୈତ୍ୟ ମାରି କଲ ଯାହା
ତୁମ୍ଭ ବିନା ଆନ କେ କରନ୍ତା କହ । ୪୭ ।
ବ୍ୟାପି ରହି ଜଳ ସ୍ଥଳ ଗଗନକୁ
ରକ୍ଷାକର ସର୍ବଦା ଏ ଜଗତକୁ । ୪୮ ।
ଅର୍ଦ୍ଧ ଚନ୍ଦ୍ରରେ କୃପା ଅପାଙ୍ଗରେ ଗୃହିଁ
ହର ହର କଷ୍ଟ ହରପ୍ରାଣସହି । ୪୯ ।
ନାନା ରଙ୍ଗରେ ଅନେକ ସ୍ତୁତି କରି
ପ୍ରେମ ଭକ୍ତିରେ ସୁରେ ଦେବୀଙ୍କୁ ଘେରି ।୫୦।
କରତାଳି ମାରି ଥୋକେ ହେଲେ ଭୋଳା
ନୃତ୍ୟ କରି ଥୋକେ ବୃଜଦେଲେ ତୋଳା । ୫୧ ।
ଦୃଢ଼ଭକ୍ତିଭାବ ଦେଖି ଦେବଙ୍କର
ଦେବୀ ପ୍ରସନ୍ନ ହୋଇ କହନ୍ତି ଗିର । ୫୨ ।
କେଉଁ ବରକୁ ଇଚ୍ଛା କର ପୁଣି
ମାଗ ମାଗ ବେଗେ ଦେବି ଏହିକ୍ଷଣି । ୫୩ ।
ସର୍ବ ଦେବ ବୋଲନ୍ତି ଅଖିଳେଶ୍ୱରୀ
ସର୍ବବାଧା ଆମ୍ଭର ଶାନ୍ତ କରି । ୫୪ ।
ଏହିରୂପେ ରିପୁକୁଳ ବିନାଶିବ
ତୁମ୍ଭ ଚରଣରେ ଦୃଢ଼ଭକ୍ତି ହେବ । ୫୫ ।
ସର୍ବ ଦେବଙ୍କର ଏ ବଚନ ଶୁଣି
ତୋଷ ହୋଇ ଆଜ୍ଞା ଦେଲେ ଠାକୁରାଣୀ । ୫୬ ।
ବୈବସ୍ୱତ ମନୁ ଅଷ୍ଟବିଂଶ ଯୁଗେ
ନିଶୁମ୍ଭ ଶୁମ୍ଭ ଜନ୍ମିବେ ବିଧି ଯୋଗେ । ୫୭ ।

ନନ୍ଦ ଘରେ ଯଶୋଦା ଗର୍ଭେ ଜାତ ।
ହୋଇ ବିନାଶିବି ଏ ମୋର ସତ୍ୟ । ୫୮ ।
ଉଗ୍ର ମୂର୍ତ୍ତିରେ ମୁଁ ପୁଣି ଅବତରି ।
ଦୁଷ୍ଟ ଦାନବଙ୍କୁ ଦେବ ନାଶ କରି । ୫୯ ।
ଦନ୍ତ ଦାଡ଼ିମ୍ବ-କୁସୁମ ପ୍ରାୟ ହେବ ।
ରକ୍ତଦନ୍ତିକା ନାମ ମୋର ପ୍ରସରିବ । ୬୦ ।
ଅନାବୃଷ୍ଟିରେ ନିର୍ମଳ ହେବ ମହୀ ।
ଶତବରଷ ଦୁର୍ଭିକ୍ଷ ଭବ ବହି । ୬୧ ।
ଶାକ ଭୁଞ୍ଜାଇ ପ୍ରାଣ ରଖନ୍ତେ ମୁହିଁ ।
ଶାକାମ୍ବରୀ ନାମ ମୋର ହେବ ତହିଁ । ୬୨ ।
ପୁଣି ଦୁର୍ଗମ ଦୈତ୍ୟଙ୍କୁ ନାଶିବ ।
ଦୁର୍ଗା ନାମକୁ ଜଗତେ ପ୍ରକାଶିବ । ୬୩ ।
ଭୀମ ଦନୁଜମାନଙ୍କୁ ସଂହାରିବ ।
ଭୀମା ବୋଲି ଜଗତେ ଖ୍ୟାତ ହେବ । ୬୪ ।
ପୁଣି ଅରୁଣ ଅସୁର ପ୍ରାଣ ହରି ।
ତିନିଭୁବନ ଦେବି ରକ୍ଷା କରି । ୬୫ ।
ଲୋକ ଭ୍ରମରୀ ନାମେ ଭଜିବେ ମୋତେ ।
ଦୈତ୍ୟମାନଙ୍କୁ ନାଶିବ ଏହିମତେ । ୬୬ ।
ମଧୁସୂଦନ ଦେବ ନୃପତମଣି ।
ଦେବୀ ସ୍ତୁତିକୁ ସନ୍ତୋଷେ ଦେଲେ ଭଣି । ୬୭ ।

## ଦ୍ୱାଦଶ ଛାନ୍ଦ

### ରାଗ—ଦେଶାଖ

ଶୁଣ ହେ ସୁରଥ ପୁଣି ଧର୍ମଭଗଜ-ଦୂଳଣୀ
ସୁରଙ୍କୁ କହନ୍ତି ବାଣୀ ଆନନ୍ଦମନେ,

ସତ୍ୟ ମୋର ଏ ବଚନ          ନିତ୍ୟ କରି ଯେତୁ ଜନ
ସ୍ତୁତି କରିବ ଗାୟନ ମୋ ସନ୍ନିଧାନେ ।
ତାହାର ମୁଁ ସକଳ ବାଧା
ହରି, ରକ୍ଷା କରୁଥାଇ ବହୁ ଶରଧା । ୧ ।
ମଧୁକୈଟଭ ମର୍ଦ୍ଦନ          ମହିଷାସୁର କର୍ଦ୍ଦନ
ଶୁମ୍ଭ ନିଶୁମ୍ଭ ନିଧନ ଯେତୁ ପଢ଼ନ୍ତି,
ଚତୁର୍ଦ୍ଦଶୀ ଅଷ୍ଟମୀରେ          ସଂକଗନ୍ତି ନବମୀରେ
ଶଦ୍ଧାଳୁ ହୋଇ ଭକ୍ତିରେ ଯେତୁ ଶୁଣନ୍ତି ।
ତାଙ୍କ ପାପ ତୁଳା ନିକର,
ଭଗବତୀ ସବୁକାଳେ କରେ ସଂହାର । ୨ ।
ତାଙ୍କର ଦାରିଦ୍ର୍ୟ ଯିବ          କାହିଁ କାଳେ ନ ରହିବ
ସ୍ୱଜନକୁଳ ଭୟ ଯିବ ବିନାଶ ହୋଇ,
ଅନିଳ ଅନଳ ଜଳ          ଜନିତ ଭୀତି ମଣ୍ଡଳ
ହୋଇଲେ ଅତି ପ୍ରବଳ ନାଶ ଭଜଇ ।
ରଣେ ଶସ୍ତ୍ରମାନେ ତାହାଙ୍କୁ,
ବାଦ ଛାଡ଼ି ପଡ଼ୁଥାନ୍ତି ପାଦତଳକୁ । ୩ ।
ମହାମାରୀ ସମ୍ଭବ          ଉପସର୍ଗ କ୍ଷୟ ଯିବ
ତ୍ରିବିଧ ଉତ୍ପାତ ହେବ ନାଶ ପ୍ରଖରେ,
ନ ଥିବ ତାର ଦୁର୍ଗତି          ପୁତ୍ର କଳତ୍ର ସମ୍ପତ୍ତି
ସହିତେ ବଞ୍ଚିବ ସୁତ-ଧନ ସୁଖରେ ।
ଯେଉଁଠାରେ ହୋଏ ପଠନ,
କର୍ଣ୍ଣ ଡେରି ଶୁଣୁଥାଇ ହୋଇ ପ୍ରସନ୍ନ । ୪ ।
ବଳି ପ୍ରଦାନ କାଳରେ          ମୋର ପୂଜନ ବେଳରେ
ହୋମ ବିଧି ସମୟେ ଯେ କରେ ଗାୟନ ।
ଛାଡ଼ଇ ଦେହୁଁ କଲୁଷ          ବଢ଼ଇ ତାର ଆୟୁଷ
ବୁଡ଼ଇ ନାହିଁ ସେ କ୍ଲେଶ-ଜଳେ ସ୍ୱଜନ ।

ଭାଗ୍ୟବନ୍ତ ଲୋକରେ ସେହି,
ଧନରେ ସଂପୂର୍ଣ୍ଣ ହୋଇ ଦିନ ହରଇ । ୫ ।

ହୋଇଣ ଯେ ଶୁଦ୍ଧଚିତ୍ତ ଶରଦକାଳ ସଙ୍ଗତ
ପୂଜାରେ ହୁଅଇ ରତ ପ୍ରତିବତ୍ସରେ,
ତହିଁ ମୋର ଚଣ୍ଡୀପାଠ ପଠନ କରଇ ଶଠ-
ଧଣ ଛାଡ଼ି ଏକମନସ୍କ ହୋଇ ସ୍ୱେଚ୍ଛାରେ ।
ଅନ୍ଧବ୍ୟାଧି ନ ଥାଇ ତାର,
ହୁଅଇ ସେ ଅଖିଳ ମଣ୍ଡଳ ଈଶ୍ୱର । ୬ ।

ତାହାର ସର୍ବ ସମ୍ପଦ ପଦାତଳେ ନିସ୍ପଦ
ହୋଇ କରିଥାଇ ପଦ ସଦାକାଳରେ,
ସମସ୍ତ ବଇରୀଗଣ ଶୁଣି ମୋ ମହିମା ଗୁଣ
ଦନ୍ତେ ଧରିଣ ତୃଣ ପଳାନ୍ତି କ୍ଷଣରେ ।
ବନ୍ଧ୍ୟା ଶୁଣି ସନ୍ଧ୍ୟାକାଳରେ,
ଗୁଣବନ୍ତ ସୁତ ଧରି ବସେ କୋଳରେ । ୭ ।

ବଶୀକରଣ ମୋହନ ବିଦ୍ୱେଷଣ ଉଚ୍ଚାଟନ
ସ୍ତମ୍ଭନ କର୍ମ ମାରଣ କାର୍ଯ୍ୟେ ପ୍ରସନ୍ନ,
ହୋଇ ଯେତୁ ପୁଣ୍ୟଜନ କରେ ଏ ସ୍ତୁତି କୀର୍ତ୍ତନ
ଫଳ ଦିଅଇ ବହନ ହୋଇ ସୁମନ ।
ଶୁଣିଲେ ନିର୍ମଳ ହୃଦରେ,
ଦେହ ଥାଉଁ ମୁକତି ଲଭଇ ଭବରେ । ୮ ।

ଘୋରବନେ ଉପସ୍ଥିତ ଦାବାଗ୍ନି ପରିବାରିତ
ଦସ୍ୟୁଭୟ ଉପସ୍ଥିତ ହେଲେ ସେ ଜନ,
ସିଂହ ବ୍ୟାଘ୍ର ମୁଖେ ଥିଲେ ମହାସଙ୍କଟ ପଡ଼ିଲେ
ଉଦ୍ଧାର ଧରଇ ଭଲେ ତାଙ୍କୁ ବହନ ।
ବଧ ବନ୍ଧ ଇନ୍ଧନ ତାର,
ଛେଦନ କରଇ ମୁହିଁ ହୋଇ କୁଠାର । ୯ ।

ପିବୁଜଲେ ଭୂତପାତ- ଦାତେ ହୋଇଣ କମ୍ପିତ
ଭାଜୁଲ୍ୟକାଲେ ବୋଇତ ଯେବା ସୁମରେ,
ଦାରୁଣ ରଣକାଳରେ ଶସ୍ତ୍ର ପଡ଼ିଲ୍ଲ ବେଳରେ
ମହାବେଗ ପ୍ରବଳରେ ରଖଇ ଶରେ ।
ନାନା ଉପଦ୍ରବ ଖଣ୍ଡଇ
ବନ୍ଦ୍ୟା ଭୂଷଣରେ ତାର ଅଙ୍ଗ ମଣ୍ଡଇ । ୧୦ ।
ଏମନ୍ତେ ଅନେକଫଳ କହୁଣ ସେ ହିମାଚଳ-
ସୁତା ଦେଇ ସୁରକୁଳ ମନୋରଥକୁ,
ହୁଅନ୍ତେ ଅନ୍ତରଧାନ ଦେବେ ସେ ରୂପକୁ ଧ୍ୟାନ
କରି ଚଳିଲେ ବହନ ସ୍ବର୍ଗପୁରକୁ ।
ହାନି ବୃଦ୍ଧି କାରଣୀ ସେହି
ତାଙ୍କ ବିନା ଏ ଜଗତେ ଆନ କେ ନାହିଁ । ୧୧ ।
ପରମ ଶିବ ସଙ୍ଗରେ ବିହାର କରେ ରଙ୍ଗରେ
ସ୍ଥିତି ଲୟ ବିସର୍ଗରେ କାରଣୀ ସେହି,
ପରମବ୍ରହ୍ମ ରୂପିଣୀ ହୋଇ ବ୍ରହ୍ମାଣ୍ଡକାରଣୀ
ହୁଅନ୍ତି ସମସ୍ତ ଜାଣି ନିର୍ଗୁଣ ବହି ।
ମାହାମାୟା ନାମ ଯାହାର
ଗୁଣ ପ୍ରଭାବ କହିବ କେବା ତାହାର । ୧୨ ।
ଏ ସ୍ତୁତିରେ ଯେ ତୋଷିବ ଶିବପ୍ରିୟାଙ୍କୁ ପୂଜିବ
ଗନ୍ଧ ପୁଷ୍ପ ଧୂପ ଦୀପ ଦେଇ ଭକ୍ତିରେ,
ଧର୍ମେ ହେବ ତାର ମତି , ଲଭିବ ପୁତ୍ର ସମ୍ପତ୍ତି
ବିପୁଳ ଧନ କୀରତି ଥିବ ଘରରେ ।
ତାହାର ନ ଥାଇ ଦୁର୍ଗତି,
ଶ୍ରୀ ମଧୁସୂଦନ ଦେବ ନୃପ ଭଣତି । ୧୩ ।

## ତ୍ରୟୋଦଶ ଛାନ୍ଦ

### ରାଗ—ହରି ଚଉଢିଶାବାଣୀ

ଶୁଣ ହେ ସୁରଥ ଯେବେ ମନୋରଥ ପୂର୍ଣ୍ଣ ହୋଇବ ତୋହର
ଯେନ ମୋ ବଚନ ଚଳହେ ବହନ ହିମାଦ୍ରି ଜାହ୍ନବୀତୀର
ହେ ନୃପ, ତହିଁ ବସି କର ବେଗେ ତପ,
ମହାମାୟା ନାମ ଯାଇ ଜପ,
ଦୁର୍ଗା ଜପ କର ତେଜ ତାପ, ହେ ନୃପ । ୧ ।

ଋଷି ଉପଦେଶ ଶୁଣି ନୃପଗଣ ସତ୍ୱର ହୋଇ ଚଳିଲେ
ହିମାଦ୍ରି ଶିଖରେ ସୁରନଦୀତୀରେ ତପସ୍ୟାକୁ ଆଚରିଲେ
ସେ ତହିଁ, ଆଗେ ମୃଣ୍ମୟୀ ଦେବୀଙ୍କି ଥୋଇ,
ଅନଶନ ବ୍ରତ କଲେ ତହିଁ,
ଜ୍ଞାନାନଳେ ଦେହ ଦେଲେ ଦହି, ସେ ତହିଁ । ୨ ।

ଧରି ବେଲପତ୍ର ନୃପ ନିଜ ଗାତ୍ର ରୁଧିରକୁ ବଳି ଦେଲେ
ଦେବୀ ଅର୍ପଣରେ ହୋମ ତର୍ପଣରେ ଦିବାରାତ୍ର ପୂଜାଇଲେ
ସେ ଧୀରେ, ରହି ପୁରଶ୍ଚରଣ ବିଧିରେ,
ଏକନିଷ୍ଠ ହୋଇ ସମାଧିରେ,
ତିନି ବର୍ଷ କଲେ ନିରନ୍ତରେ, ସେ ଧୀରେ । ୩ ।

ହୃଦସ୍ଥ ସ୍ୱଚ୍ଛରେ ତହିଁ ତ୍ରିବର୍ଷରେ କର୍ମ ହେଲା ସମାପତ
ଦୃଢ଼ଭକ୍ତି ହୃଦେ ବନ୍ଧି ସେ ଅନଦେ ଜଗନ୍ମାତ୍ର ପୂର୍ଣ୍ଣ ଅଦ୍ଭୁତ
ସେ କାଳେ, ଦୟା ବସିଲା ହୃଦ କମଳେ,
ଦେବୀ ପ୍ରସନ୍ନ ହେଲେ ଚଞ୍ଚଳେ,
ସାକ୍ଷାତରେ ରହିଲେ ନିର୍ମଳେ, ସେ କାଳେ । ୪ ।

ଶୁଣ ଶୁଣ ବତ୍ସ କସ ତୁମ୍ଭେ ଇଚ୍ଛା ବର ମାଗ ହେ ଅବଶ୍ୟ
ବଳି ପୂଜା ପାଇ ସନ୍ତୋଷ ମୁଁ ହୋଇ ଦେବ ନୃପ ଅବତଂସ,
ହେ ଭକ୍ତ, ତପେ ସନ୍ତାପିତ ଆଉ ନୁହ,
ଉପବାସରେ ଶାସ୍ତି ନ ପାଅ,
ହୃଦେ ନ ଧର ଆଉ ସନ୍ଦେହ, ହେ ଭକ୍ତ । ୫ ।
ଏ ବଚନ-ସୁଧା ପାନ କରି ଶ୍ରଦ୍ଧାଭରେ ସୁରଥ ନୃପତି ।
ପାଦତଳେ ପଡ଼ି ଉଠିକରି ଯୋଡ଼ି ଦେବୀ ସ୍ତମ୍ଭରେ କହାନ୍ତି,
ଗୋ ମାତ, ଶତ୍ରୁ କୁଳକୁ କର ନିପାତ,
ଦିଅ ସାମ୍ରାଜ୍ୟ ଲକ୍ଷ୍ମୀ ତୁରିତ,
ଏହାରୂପେ ଥାଉ ମୋର ଚିତ୍ତ, ଗୋ ମାତ । ୬ ।
ହୋଇ ଅତି ତୋଷ ମାଗଇ ସେ ବୈଶ୍ୟ ଅଞ୍ଜଳିକି ଦେଇ ଶିରେ
ଅତାତ ଅମାତ ହେଲି ଆଗୋ ମାତ କୁଳ ନ ଥିବ ସଂସାରେ,
ଗୋ ଦେବୀ, ନିତ୍ୟ ସ୍ଥଳକୁ ସତ୍ୱର ଯିବି,
ତୁମ୍ଭ ନାମ ମୁଖେ ଗାଉଥିବି,
ଆଉ ଭବ-ଜଳେ ନ ପଡ଼ିବି, ଗୋ ଦେବୀ । ୭ ।
ପରମ ପୀରତି ଲଭି ଭଗବତୀ ଅସ୍ତୁ ବୋଲିଣ ବୋଇଲେ ।
କ୍ଷଣମାତ୍ର ଦୟା କରି ହରପ୍ରିୟା ଅନ୍ତର ଧାନ ହୋଇଲେ,
ସେ ପାନ୍ଥ, ବର ମାଗି ହୋଇଲେ କୃତାର୍ଥ
କ୍ଲେଶ ନୋହିଲା ତାଙ୍କ ବ୍ୟର୍ଥ
ପୂର୍ଣ୍ଣ ହେଲା ତାଙ୍କ ମନୋରଥ, ସେ ପାନ୍ଥ । ୮ ।
ବୈଶ୍ୟ ସଙ୍ଗେମେଳ ହୋଇ ମହୀପାଳ ମୁନି ଆଶ୍ରମେ ମିଳିଲେ
ତପସ୍ୟା ବିଧାନ ଦେବୀ ବରଦାନ ସମସ୍ତ ତାଙ୍କୁ କହିଲେ
ସେ ଋଷି, ଶୁଣି ହୋଇଲେ ପରମ ତୋଷୀ,
ପାଶେ ବସାଇ ବହୁ ପ୍ରଶଂସି ।
ଜ୍ଞାନ କହିଲେ ଦିବସ ନିଶି, ସେ ଋଷି । ୯ ।

ସୁରଥ ବିଚ୍ଛେଦ ହୋଇବାରୁ ଖେଦ ପାଇଣ ପରଜାମାନେ
ସକଳ ଅମାତ୍ୟ ମନ୍ତ୍ରୀ ପୁରବାହୁତ ରାଜାଙ୍କୁ ଖୋଜିଲେ ବନେ
ସେ କାଳେ, ମହାମାୟା ପ୍ରସାଦରୁ ବଳେ,
ଆସି ମିଳିଲେ ମୁନିମଣ୍ଡଳେ,
ପ୍ରଜା ଦେଖି ନୃପଙ୍କୁ ଅଙ୍କୁଳେ ସେ କାଳେ । ୧୦ ।

ବଳେ ବଳେ ଗଜବାଜପରେ ବିଜେ କରାଇଲେ ନୃପମଣିଙ୍କୁ
ମୁନିଙ୍କ ପଦ୍ମରେ ପକାଇ ସତ୍ୱରେ ନେଲେ ଆପଣା ପୁରକୁ
ସେ ରାଜା, ମନୁ ଛାଡ଼ିଲେ ସକଳ ଲଜ୍ଜା,
ରାଜନୀତିରେ ପାଳିଲେ ପ୍ରଜା,
କାଳେ କାଳେ କଲେ ଦୁର୍ଗାପୂଜା, ସେ ରାଜା । ୧୧ ।

ବୈଶ୍ୟ ତପବିଧି ଆରମ୍ଭି ସମାଧି କରି ପରତୋଷ ହେଲେ ।
କାନ୍ଦନ ଶେଷେ ବସି ଭଇଲା ସେ ଦେବୀ ସେବାରେ ରହିଲେ
ସେ ଭକ୍ତ, ଭବ ଜଳଧିରୁ ତରିଗଲା,
ଯୁଗେ ଯୁଗେ କଥା ରହାଇଲା
ଧରାତଳେ ଧନ୍ୟ ପଦ ନେଲା, ସେ ଭକ୍ତ । ୧୨ ।

ଏହିରୂପେ ମହାପ୍ରଭାବରେ ମହାମାୟା ହୋଇ ଉତପନ୍ନ ।
ସତ୍ତ୍ୱ ରଜ ତମ ଗୁଣ ଅବଲମ୍ବ କରି ପ୍ରକଟ ହୁଅନ୍ତ
ସେ ସଦା, ସୁରମାନଙ୍କ ବାଞ୍ଛା ପୂର୍ଣ୍ଣଦା,
ମହାଭୟକାଳେ ଅଭୟଦା,
ଭକ୍ତଜନଙ୍କ ମଙ୍ଗଳ ପ୍ରଦା, ସେ ସଦା । ୧୩ ।

ମାରକଣ୍ଡ ଋଷି ଚଣ୍ଡୀ ଗୁଣରାଶି ପ୍ରକାଶିଲେ ପୁଣ୍ୟବନେ ।
ଶୁଣି ମୁନିବୃନ୍ଦ ହୋଇଣ ଆନନ୍ଦ ଚଳିଲେ ଯେ ଯାହାସ୍ଥାନେ,
ହେ ଜନେ, ଏଥି ବିଶ୍ୱାସ କର ଯତନେ,
ତୁମ୍ଭ ବୁଦ୍ଧି ନ ରହୁ ଅଜ୍ଞାନେ,
ହେବ ଭକ୍ତି ମୁକ୍ତି ଏ ଗାୟନେ, ହେ ଜନେ । ୧୪ ।

ଧରଣୀମଣ୍ଡନ ଶ୍ରୀମଧୁସୂଦନ ଦେବ ନୃପକୁଳମଣି ।
ଚଣ୍ଡୀକା ଚରଣ ତଳରେ ଶରଣ ପଶି ତୋଷ ହେଲେ ଭଣି,
ହେ ଈଶାନୀ, ଶୁଣିବେ ଗାଇବ ଭକ୍ତିରୁ ଯେଉଁ,
ସୁଖେ ନେବ ଦିବସ ରଜନୀ,
ବାଞ୍ଛା ପୂର୍ଣ୍ଣ କରିବେ ଜନନୀ, ହେ ଈଶାନୀ ।୧୫।

ଇତି ଶ୍ରୀ ମାର୍କଣ୍ଡେୟ କୃତ ପୁରାଣୋକ୍ତ
ଶ୍ରୀ ଶ୍ରୀ ଚଣ୍ଡୀରହସ୍ୟ ଗୀତ

ସମାପ୍ତ

କଟକ ଦତ୍ତପ୍ରେସରେ ଶ୍ରୀହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯[illegible]୯ ।